ପ୍ରକାଶକ

ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର

କଟକ-୨

ପ୍ରଥମ ସଂସ୍କରଣ—୧୯୭୪

ମୂଲ୍ୟ—ଦୁଇ ଟଙ୍କା ପଚାଶ ପଇସା

ଅତିରିକ୍ତ ମୂଲ୍ୟ ପଚାଶ ପଇସା

ମୁଦ୍ରାକର

ପଣ୍ଡିତ ଅନସୂୟା ପ୍ରସାଦ ପାଠକ

ରାଷ୍ଟ୍ରଭାଷା ସମବାୟ ପ୍ରେସ, କଟକ-୧

## କବିପ୍ରିୟାସୁ······

ଅନ୍ଧାରଠାରୁ ଆଲୁଅ ଯେତିକ ଦୂର—
ବନ ଯାଇ ଘରି ଆସିବାକୁ ଯେତିକ କ୍ଲେଶ
‘ସେତିକ ରହୁଯାଏ
ଇନ୍ଦ୍ରିୟାନୁଗ ଆଉ ଇନ୍ଦ୍ରିୟାତୀତ ଅନୁଭୂତି ଭିତରେ
ତଫାତ୍ ।
ସେଇ ସଞ୍ଜ ଆଉ ସକାଳର ସନ୍ଧିସ୍ଥଳରେ
ତମେ ଆଉ ମୁଁ ।
ସ୍ୱାର୍ଥର ଆବରଣଟା ଖୋଲିଦେଇପାରିଲେ
ଅନ୍ଧାର ଆଲୁଅ ହୋଇଯାନ୍ତା !
ପ୍ରେୟ ଶ୍ରେୟ ହୋଇଯାନ୍ତା !
ନ ହେଲା ନାହିଁ—ଦୁଃଖ ନାହିଁ—ପ୍ରେୟ ଶ୍ରେୟ ନ ହେଉ !
ଶ୍ରେୟକୁ କଣ ପ୍ରେୟ କରିଦେବ ନାହିଁ ?
ଆଲୁଅକୁ କଣ ଅନ୍ଧାର ଭିତରକୁ ଟାଣି ଆଣିଦେବ ନାହିଁ ।
ସେଇ ଚେଷ୍ଟାରେ ଏ ଚିଠାଉ ମୋର ତମ ପାଖକୁ···

ତମର
"ମୁଁ"

# କାଳି

ବଡ଼ ବଡ଼ ଲୋକଙ୍କ ନାଁରେ ନାନା କଥା ଉଠେ ।
ଲୋକେ ଉଠାନ୍ତି । ମଜା ଲାଗୁଥିବ ବୋଧେ ।

କିନ୍ତୁ ଛୋଟିଆ ଲୋକଙ୍କ ନାଁରେ ଏମିତି ଅପବାଦ-
ନାଗରା ବାଜେ କାହିଁକି ? ମୁଁ ବୁଝିପାରୁନି ।

ବଡଲୋକଙ୍କ ପରଶ ପାଇ ମିଛ କଥାଗୁଡ଼ିକ ନିସ୍ତରିଯାନ୍ତି
ସତେ କି ! ଶ୍ରେଷ୍ଠ କଥାରେ ବଡ଼ଲୋକଙ୍କ ବଡ଼ିମା
ବଢ଼ିଯାଏ ସିନା—ଛୁଡ଼ିଯାଏ ନାହିଁ କିଛୁ । ଆଉ ମିଛ
କଥାଯାକ ରୋଚକ ହୋଇଉଠେ । ଭଲଲାଗେ
ଶୁଣିବାକୁ ।

ସେଇଟା ପୁଣି ଅଳପି ଲୋକେ ବିପରୀତ । କାଣୀ ଆଖିକି
କଜଳଗାର ପରି । ନୁହେଁ ?

ଷୋଳସହସ୍ର ଗୋପନାରୀ କଥା ଛାଡ଼; ଗୋଟିକ ଛଡ଼ା
ଦୁଇଟିକି ହାତ ବଢ଼ାଇଲେ ମହତ ରହିବଟି କି ?
ଗୋପୀ ଗୋଟିକୁ କୃଷ୍ଣ ଗୋଟିଏ ହବାର ଶକ୍ତି କୃଷ୍ଣଦାସ,
କୃଷ୍ଣ ମହାନ୍ତି, ମିଶ୍ର ବା ମହାପାତ୍ରମାନଙ୍କର ନ ଥାଏ ।
ତେଣୁ କୃଷ୍ଣ କୃଷ୍ଣ : କୃଷ୍ଣଦାସ କୃଷ୍ଣଦାସ । ରାମଚନ୍ଦ୍ର
ଆଉ ରାମା ଭଣ୍ଡାରୀ ଏକ ନୁହନ୍ତି ।

ସେଥିପାଇଁ 'ମୋ' ଭଳି ଛୋଟିଆ ଲୋକଟି ନାଁରେ କେ
କି ଲଗାଇ କହିଦେବାରେ ମୋର ବଡ଼ ଡର ।

ମୁଁ ? ମୁଁ ଶ୍ରେଷ୍ଠ ନୁହେଁ ଆଉ କଣ ବଡ଼ ? ବଡ଼ ମୁଁ
କେବେ ନ ଥିଲି,ହୋଇନାହିଁ—ହୋଇପାରିବ ମଧ୍ୟ ନାହିଁ ।
ବଡ଼ ହେବାର ସଧ ମୋର କେବେ ନ ଥିଲା ।
ନାହିଁ ବି ।

ନାଁ-ନାଁ—ସେଟା ମୋର ବଡ଼ନ୍ତ ନୁହେଁ । ସେତେବେଳେ ବି ମୁଁ ଗ୍ଳେଟ ଥାଏଁ । ଯେତେବେଳେ ବି ମୁଁ ଦେଖେଁ —ଏଇ ମାଟି ଉପରେ ଠିଆ ହୋଇଛି—ମୁଁ—ଅତି ଗ୍ଳେଟିଆ ମଣିଷଟେ—ଖାଲି ମୁଣ୍ଡଟା ଯାଇ ଆକାଶରେ ବାଜଯାଉଛି ଧଡ଼୍‌କନା ! ସେ ଏକ ବିରାଟ ବିଶ୍ୱବ୍ୟାପୀ ପୁରୁଷର ଆବେଶ—ଏଇ ଗ୍ଳେଟ ଦେହଟିରେ । ଭୂତ ମାଡ଼ି ବସିଲାପରି—କାଳସୀ ଲାଗିଲାପରି । ଜୀବନରେ ସେ ଏକ ଅଭିନବ ମୁହୂର୍ତ୍ତ—ଅଲଭ୍ୟ ଅଭିଜ୍ଞତା ! ସେ ମୋତେ ବଡ଼ କରି ଦେଇଯାଏ ନାହିଁ । ସେଥିରେ ମୋର ବଡ଼ନ୍ତ ହୁଏ ନାହିଁ । ସେ ଗ୍ଳଡ଼ଯାଏ, ଲିଭିଯାଏ, ଉଭେଇଯାଏ କୁଆଡ଼େ ! ମୁଁ ଯେଉଁଠି ସେଇଠି । ଯାହା ତାହା । ପଡ଼ିଥାଏଁ । ପୁଣି ସେଇଭଳି ଆଉ ଏକ ମୁହୂର୍ତ୍ତର ଅପେକ୍ଷାରେ ।

ସେଇ ଅନପେକ୍ଷ ଅପେକ୍ଷାହିଁ ଜୀବନ—କବିର ଜୀବନ କହିପାରି ।

କବି ବା ଲେଖକ ସିଦ୍ଧ-ଯୋଗୀ ନୁହନ୍ତି । ଧ୍ୟାନରୁ ଧାରଣା ନେଇ ସେ ସାହିତ୍ୟର ଆଧାରରେ ପରିବେଷଣ କରନ୍ତି କି ନାହିଁ କହିପାରୁନ । କିନ୍ତୁ ତା' ଜୀବନର ପ୍ରତି ଅଧ୍ୟାୟରେ ଏକ ଅଧ୍ୟୁଷିତ ଆତ୍ମାର ଅସହାୟ ଆର୍ତ୍ତନାଦ । ପ୍ରତି ଅଙ୍ଗରେ ତାର ଯେଉଁ ଅଲଙ୍ଘ୍ୟ ଅଭିଜ୍ଞତାର ତରଙ୍ଗ ଲିଭିଲିଭି ଯାଏ, ତାହା ପୁଣି ଆଉ ଏକ ଉଜ୍ଜ୍ୱଳ ଉତ୍ତୁଙ୍ଗ ପ୍ରସଙ୍ଗରେ ଉତ୍ପନ୍ନ ହୋଇ-ଉଠେ—ଅତ୍ୟନ୍ତ ନିଃସଙ୍ଗ ଅବସ୍ଥାରେ ।

ତେଣୁ ସମାଧିରୁ ତାର ସାହିତ୍ୟ ସଂଗୃହୀତ ନ ହୋଇ ପଛେ, ଆଜନ୍ମବ୍ରହ୍ମଚାରୀ ବାତ୍ସାୟନଙ୍କ ପରି ସେ କାମଶାସ୍ତ୍ର ରଚନା କରୁ ନ କରୁ, ତଥାପି—ତଥାପି ତା' ଜୀବନର ଗୋଟିଏ ଗୋଟିଏ ମୁହୂର୍ତ୍ତ ସନ୍ନିବିଷ୍ଟ

ସବିକଳ୍ପନାରେ, ନିର୍ବିକଳ୍ପ ନିମଜ୍ଜନରେ ସୀମାଶିତଙ୍କବେ ସମୃଦ୍ଧ ଅସମ୍ଭବ ଭାବରେ ଅଭିବୃଦ୍ଧ ।

ସେ ସାଧାରଣ ହୋଇ ମଧ୍ୟ ଅସାଧାରଣ । ସେ ଏକ ନିର୍ଧାର ଅବଧାରକ ।

କବିର ପ୍ରେମ ଉତ୍ସର୍ଗରେ, ବନ୍ଧୁ ବିରହ ମିଳନର ସର୍ଗ ଉପସର୍ଗରେ ତା'ର ଚରିତ୍ରର ମାପକାଠି ଖୋଜିବୁଲନ୍ତି ଯେଉଁମାନେ, ସେଇମାନଙ୍କ କଳନାରେ ହିଁ ଥାଏ କଳଙ୍କ । କବି କିନ୍ତୁ ଏକ ନିଷ୍କଳଙ୍କ ଚନ୍ଦ୍ରମା !

ତମେ ମୋର ବହୁ ପ୍ରେମକବିତା ପଢ଼ିଛ—ପ୍ରେମକଥା ଶୁଣିଛ । ମୁଁ ମନା କରୁନାହିଁ । ତମେ କିପରି ପରତେ ଯିବ "ମୁଁ ଆଖି ଛୁଁ—ପ୍ରେମ କ ଦରବ ଜାଣେ ନାହିଁ" ବୋଲି ବାର ବାର, ଶହେ ବାର ଶପଥ କରି କହିଲେ ? କଥାଟା ଠିକ୍ । ପ୍ରତିବାଦ କରିହେବ ନାହିଁ । କିନ୍ତୁ—

କିନ୍ତୁ ପ୍ରେମଟାଇ କଣ କେବଳ ପାପ—ସବୁବେଳେ—ସବୁ କ୍ଷେତ୍ରରେ ? ନାରୀ ହିଁ କଣ କେବଳ ନରକର ଦ୍ୱାର ? ଯେଉଁମାନଙ୍କୁ ମୁଁ ଭଲ ପାଇଛି ଜୀବନରେ, ଯେଉଁମାନେ ମୋତେ ଭଲ ପାଇଛନ୍ତି ଜାଣିତରେ ଅବା ଅଜାଣତରେ ମୋର, ଜଣ ଜଣଙ୍କୁ ଯାଇଁ ପଚ୍ଛର—କିଏ ଅନୁଶୋଚନାରେ ସିକ୍ତ ହୋଇଛି ମୋ ସଂସ୍ପର୍ଶରେ ଆସି ? ଯଦି କେହି ଆଶାନୁରୂପ ଆନନ୍ଦ ପାଇନାହିଁ, ସେ ମୋର ଅକ୍ଷମତା; ଚରିତ୍ରହୀନତା ନୁହେଁ । କାହାକୁ ସନ୍ତାପରୁ ତାରଣ ଯଦି କରିପାରି ନାହିଁ, ସେ ମୋର ଅପାରଗତା ହୋଇପାରେ; ପ୍ରତାରଣା ନୁହେଁ ।

ପ୍ରେମଟା ଅମାପ । ଈଶ୍ୱରର ମାପକାଠିରେ ତାକୁ ମାପି ହୁଏ ନାହିଁ । ପ୍ରେମର ପ୍ରତାରଣାହିଁ ପାପ— ଈଶ୍ୱରହୀନତା । ପ୍ରେମ ପ୍ରତାରକ ନୁହେଁ—ସଦାସର୍ବଦା ତାରକ ।

ତମକୁ ? ନା—ମୁଁ ପ୍ରତାରଣା କରିନାହିଁ । କରୁନାହିଁ । ହୁଏତ ଭୁଲ୍‌ଚୁକ୍‌ରେ କେଉଁଠି ହୋଇଯାଇଥିବ କେବେ ! ଆପେ ଆପେ । ଇଚ୍ଛା କରି ନୁହେଁ । ସେମିତି ହୋଇଯାଏ । ମଣିଷ ନିଜକୁ ନିଜେ ପ୍ରତାରଣା କଲା ପରି । ବାଧ୍ୟ ହୁଏ ବେଳେ ବେଳେ । ସେ ପ୍ରତାରଣାର ଅବତାରଣା କେବଳ ତାରଣା ପାଇଁ, ପ୍ରଭୁ ଭକ୍ତାଧୀନ ହେଲାପରି ।

ହୁଏତ ଏଇ ପ୍ରତାରଣାହିଁ ଥିଲା ତମର କାମ୍ୟ ।
ମୋଠାରୁ ତମର ପ୍ରାପ୍ୟ ।
କିମ୍ବା ମଣିଷକୁ ଦେବତାଜ୍ଞାନରେ ପୂଜା ଦେବାର ଅପରାଧଜନିତ ପ୍ରାୟଶ୍ଚିତ୍ତ ସେ । ହୋଇପାରେ ।
ଅସମ୍ଭବ ନୁହେଁ ।

ଯେଉଁମାନେ ମୋତେ ଦେବତାଜ୍ଞାନରେ ପୂଜା କରନ୍ତି, ସେମାନଙ୍କୁ ମୁଁ ମନା କରିପାରେଁ ନାହିଁ । ପାରିବି କିପରି ? କହିବି କେମିତି ଯେ—ନା-ନା, ମୁଁ ଦେବତା ନୁହେଁ, ମଣିଷ ?

କହିଦେଲେ ଅବଶ୍ୟ ମୁଁ ନିର୍ଦ୍ଦୋଷ ହୋଇଯାନ୍ତି । କିନ୍ତୁ ଦୁର୍ଦ୍ଦଶା ପଡ଼ିବ ତାଙ୍କରି, ଯେଉଁମାନେ ମୋତେ ଭଲ ପା'ନ୍ତି—ଭଲ ପାଇ ପୂଜା କରନ୍ତି ଦେବତାଜ୍ଞାନରେ ।
ତାଙ୍କ ସ୍ୱପ୍ନ ଭାଙ୍ଗିଯିବ । ତପସ୍ୟା ଭଗ୍ନ ହୋଇଯିବ ।
ସାଧନା ରହିଯିବ ଅସିଦ୍ଧ । କାମନା ନିଷ୍ଫଳ ।
ସେଇ ଭୟରେ ମୁଁ ନୀରବ ରହେଁ ।
ପୂଜା ନିଏଁ । ମନା କରି ହୁଏ ନାହିଁ ।

ସେ ପୂଜା ପାଇ ମୁଁ ନିଜେ ପତିତ ହେଉଥାଏଁ—
ନିଜକୁ ପତିତ କରିଦିଏଁ କିନ୍ତୁ ଅନ୍ୟକୁ ଟାଣି
ଆଣିପାରେ ନାହିଁ—ଫିଙ୍ଗି ଦେଇପାରେ ନାହିଁ ସେମାନଙ୍କୁ
ସେଇ ପତନର ସୁଅମୁହଁକୁ ।

ଏକଲବ୍ୟର ଗୁରୁ ଦ୍ରୋଣ ନୁହନ୍ତି—ମାଟିର
ପିତୁଳାଟିଏ । ମାଟିର ପିତୁଳ ମାଟିରେ ମିଶିଯାଇଥିବ !
ନିଜକୁ ସେ ଦ୍ରୋଣ ବୋଲି କହିନାହିଁ କେବେ । ତାକୁ
ମଧ୍ୟ ଦ୍ରୋଣ ବୋଲି ମାନି ନେଇ ନାହାନ୍ତି କେହି,
ଏକା ସେହି ଏକଲବ୍ୟ ଛଡ଼ା—ସେଇ ଦ୍ରୋଣଙ୍କର
ପ୍ରତିମୂର୍ତ୍ତି ପିତୁଳାକୁ । ସେ ମଧ୍ୟ ମନା କରିନାହିଁ
କେବେ—ଏକଲବ୍ୟକୁ, 'ପୂଜା କର ନାହିଁ—ମାଟିର
ପିତୁଳାଟାଏ ପରା !'

ଠିକ୍ ସେମିତି । ସେଇ ମାଟିର ଦ୍ରୋଣ ପରି ନିର୍ବେଦ—
ନିର୍ବିବାଦ ମୁଁ । ମୋର ଯେମିତି କିଛି ଭବିଷ୍ୟତ
ନାହିଁ । ଅତୀତ ବି ହୁଏତ ନ ଥିଲା । ଥିଲେ ସେ
ବିସ୍ମୃତିର ଗର୍ଭରେ । ମୋର ଅତୀତ, ବର୍ତ୍ତମାନ ଓ
ଭବିଷ୍ୟତ ସବୁ ସେଇ—ସେଇମାନେ—ସେଇ
ଏକଲବ୍ୟମାନେ । ମାନେ—ତମେ । ତମେ ମଧ୍ୟ ।

କେତେ ଅର୍ଜୁନ ଯିବେ, ଆସିବେ । କରର କୋଦଣ୍ଡ
ମୁଣ୍ଡରେ ଧରି ବୁଲିଯିବେ । ଏକଲବ୍ୟ କିନ୍ତୁ
ଏକୈକଲବ୍ୟ ହୋଇ ରହିଯିବ । ଅଦ୍ୱିତୀୟ, ଅନୁପମ
ଅପରାଜେୟ, ଅପରିମେୟ । ଯୁଗ ଯୁଗକୁ,
କାଳକାଳକୁ ।

ସେଥିପାଇଁ ଶିଷ୍ୟର ମହତ୍ତ୍ୱ ଅଧିକ ଗୁରୁଠାରୁ । ଭକ୍ତର
ବିଭୂତି ସମଧିକ ଭଗବାନଙ୍କ ଅପେକ୍ଷା ।

ସେଥିପାଇଁ ତମେ—ବଡ଼ । ମୁଁ—ସାନ, ଶ୍ରେଷ୍ଠ ।

ସେଥିପାଇଁ ମୁଁ କବି ନ ହେଲେ ବି ମୋତେ ଯେଉଁମାନେ
କବି ଆଖିରେ ଦେଖନ୍ତି, ସେମାନେ ମୋତେ
ନିଷ୍କଳଙ୍କ ମନେ କରିବା ଉଚିତ— ଶ୍ରେଷ୍ଠ ହେଲେ ବି
ବଡ଼ ମନେ କରିବା ଉଚିତ—ମାଟି ହେଲେ ବି ଦ୍ରୋଣ
ମନେ କରିବାରେ ତାଙ୍କରି ଲାଭ ।

ତା' ନ ହେଲେ—ଅବିମିଶ୍ର ଆନନ୍ଦର ଉତ୍ସାରକ
କବିର କୃତି ଜ୍ୱାଳାମୁଖୀ ଅଗ୍ନି-ଉତ୍ପାତର ଆବାହକ
ହୋଇଉଠିବ । ଆଶୀର୍ବାଦ ଅଭିଶାପରେ ପରିଣତ
ହୋଇଯିବ ।

କାବ୍ୟରୂପକ ମହୋଦଧିରୁ ଅମୃତ ଓ ଗରଳ ଉଭୟ
ଉଦ୍ଧୃତ ।

ମୋ ଆଡ଼କୁ କେଉଁଣେ ଚାଳ ? ମୁଁ ନିର୍ଦ୍ଦୋଷ ନୁହେଁ,
ନିଷ୍କଳଙ୍କ ନୁହେଁ, କବି ମଧ୍ୟ ନୁହେଁ । ତଥାପି ଖୋଜି
ବସିଲେ ହୁଏତ ଦୋଷ ମିଳିବ ନାହିଁ ସହଜରେ ।
କାହିଁକି ଜାଣ ?

ଜୀବନର ଗତିରେ—ବିଶେଷତଃ କେତେ ଦୁର୍ଗନ୍ଧିରେ
ସେସବୁ ଖସି ଖସି ପଡ଼ିଗଲିଣି ଯେମିତି—କେତେ
କେଉଁଠି । ସାପ କାତି ଗୁଡ଼ିଲାପରି । ଏମିତି ମନେ ହୁଏ

କେବେ ବା କେଉଁ ଦିନ ଯେଉଁସବୁ ଦୋଷ ମୋର
ହୋଇଥିଲା, ସେସବୁ କଣ ଆଜି ମୋର ହୋଇ ଅଛି ?
ସେ ହୁଏତ ତମର, ତାଙ୍କର, ଅନେକଙ୍କର । ମୋର
ଏକା ହୋଇ ନାହିଁ ।

କବି ପଦ୍ମପତ୍ରମିବାମ୍ଭସା । ଚପଳ ହୋଇପାରେ । ମାତ୍ର
ନିର୍ଲିପ୍ତ । ନଳିନୀଦଳଗତ ଜଳମତି'ତରଳଂ ହୋଇ
ନ ଥିଲେ ପଦ୍ମର ପ୍ରତିବିମ୍ବ ଶୋଭା ପାଆନ୍ତା ନାହିଁ
ସେଥିରେ, ସେଇ ପଦ୍ମପତ୍ରସ୍ଥିତ ଜଳକଣାରେ ।
ଅଚଳନରେ ହିଁ ଆବିଳତା ।

କଵଳୁ କାହାର ଲଗା ନାହିଁ । ତଥାପି ସେ ଲାଗିଥାଏ ସମସ୍ତଙ୍କଠି । କଣ୍ଟାରୁ କୁସୁମ ଆସି ହୃଦୟକୁ ବିଦ୍ଧ କରେ ନାହିଁ ଦିବ୍ୟଦ୍ୱାର ପ୍ରଲମ୍ବନରେ ।

ସେ ଜଣକର ଉଚ୍ଛିଷ୍ଟ ନୁହେଁ—ଜଣକ ପାଇଁ ଉତ୍ସୃଷ୍ଟ ନୁହେଁ ।

ସେ ଜଣକର ମାଲ୍ୟ ନୁହେଁ—ଅଗଣନର ନିର୍ମାଲ୍ୟ ।

ଜଣକଠାରେ ସେ ଧରା ଦିଏ ନାହିଁ—ସହସ୍ର ଅଧରରେ ସେ ଅଧରାମୃତ—ଅଧରପଣା ।

ହରଣ ତରଣ ! ବାନ୍ଧି ନୋହେଁ—କିନ୍ତୁ ବନ୍ଧା ପଡ଼େ । ଅଳପକେ ।

କ୍ଷଣକେ ସେ ଅନ୍ତର୍ଭୂତ । ପରକ୍ଷଣରେ ସେ ପୁଣି ଅଭିମୁକ୍ତ ।

ସେ ଯେତିକ ସମର୍ଥ ଆରାଧକ—ସେତିକ ଅସମର୍ଥ ସାଧକ ।

ସେଇଥିପାଇଁ ଯାବତ ଭୁଲ୍ ବୁଝାମଣା ।

ଜବ ଦେବତା ନୁହେଁ ମଣିଷ । ଯତିବ୍ରତ ନୁହେଁ, ସଂସାରୀ—ପ୍ରବରଣପର । ଶୁକ ନୁହେଁ ବ୍ୟାସ ।

ଶୁକଦେବ ଖସିଯାଉଛନ୍ତି ! ପଛେ ପଛେ ବ୍ୟାସ— ଶୁକଦେବଙ୍କ ଜନକ—କୃଷ୍ଣଦ୍ୱୈପାୟନ ବ୍ୟାସ— ଏକଦା ଅପ୍ସରା-ସୌନ୍ଦର୍ଯ୍ୟକାତର ବେଦଉପନିଷଦ- ପୁରାଣ-ଭାଗବତର ପୁରୋଦ୍ରଷ୍ଟା ସ୍ରଷ୍ଟା ବେଦବ୍ୟାସ । ଖସିଯାଉଛନ୍ତି । ପଛେ ପଛେ—କେତେ ଦୂରରେ ଆସୁଛନ୍ତି ସ୍ୱପୁତ, ସୁପୁତ, ଅରଣି ଘର୍ଷଣରୁ ଉପଜାତ ଔରସଜ ପୁତ୍ର ଶୁକଦେବ ।

ନିର୍ବିକାର, ତେଜସ୍ୱୀ ଦିବ୍ୟପୁରୁଷ !

କିନ୍ତୁ ଏ କଣ ? କୌପୀନବନ୍ତ ଏଇ ତରୁଣ ସନ୍ନ୍ୟାସୀର ସାନ୍ନିକଟ୍ୟରେ ମଧ୍ୟ ଗ୍ରାମସୀମନ୍ତିନୀ ମଦନଶରଘ୍ନି-ମାନଙ୍କର ମତ ଅବଚଳ ଅଚଞ୍ଚଳ, ଗତ ନିଃସଙ୍କୋଚ ନିର୍ଭୟ କିପରି ?

ପୁଣି କୁଳବୃଦ୍ଧ, ପୁରାଣ-ପୁରୁଷୋତ୍ତମ, କବି, ସ୍ରଷ୍ଟା ବେଦବ୍ୟାସଙ୍କର ଗ୍ରୁପ୍ସାପାତ ମାତ୍ରେ ସେମାନେ ଏପରି ସନ୍ତ୍ରାସିତର ଚକିତ-ଚଞ୍ଚଳ ଲଜ୍ଜା-ବଧୂର କାହିଁକି ?

ବ୍ୟାସ କବି । ଶୁକଦେବ ସିଦ୍ଧ-ଯୋଗୀ ।

ମହାଭାରତର ଉପାଖ୍ୟାନ ।

କବି ଯୋଗୀ ନୁହନ୍ତି—ନିଯୋଗୀ । ସିଦ୍ଧ ନୁହନ୍ତି କିନ୍ତୁ ପ୍ରସିଦ୍ଧ ।

ସଂସାରେ ଥାଇ ସେ ସଦା ଉଦାସୀନ । ନିଃସଙ୍ଗ-ଭାବରେ ଦିନ କାଟେ ।

କେଉଁଠି ପହଞ୍ଚିଲେ ଭଲ ଲାଗେ । ନ ପହଞ୍ଚିଲେ ନାହିଁ । ଆପତ୍ତି ନ ଥାଏ ।

ମୋ ଜୀବନକୁ ନିଜ ହାତପାପୁଲିରେ ଥୋଇ ମୁଁ ଦେଖେଁ ।

ସେଠି ସୁଖ ଆସେ—ଖାଲି ଗୁଡ଼ିଯିବା ପାଇଁ—ଗୁଡ଼ିଯିବାକୁ ପଡ଼େ ।

ପୁଣି ଦୁଃଖ ପଡ଼େ—ତାକୁ ମାଡ଼ିଯିବା ପାଇଁ—ମାଡ଼ିଯିବାକୁ ହୁଏ ।

ଆଘାତ ଆସେ—ସହି ଶିଖିବାକୁ ।

ଆଶ୍ଳେଷ ମିଳେ—ଧୋଇ ରଖିବାକୁ ନୁହେଁ—ପୋଛି ଦେବାକୁ ।

ସେଥିପାଇଁ ମୁଁ ଦୁଃଖରେ ହସିପାରେଁ—ହସି ପାରୁଛି ।

ଆଜି ସୁଖରେ ମୁଁ ଶିଖିଛି କେମିତି କାନ୍ଦିବାକୁ ହୁଏ ।
ମୁଁ କାନ୍ଦି ଜାଣେ । ହସିପାରେଁ ।
ଟେଲିଫୋନରେ ଆରମ୍ଭ ଆଉ ଶେଷ, ମୋର ପରିଚୟ ।

ଏ ଜୀବନ ଯେମିତି ଜୀଇ ନାହିଁ—ଜୀଇବାର ଛଳନା
କରୁଛି । ମୁଁ ମୁଁ ନୁହେଁ—ମୁଁ ମୋ ଜୀବନର ଏକ
ପରିହାସ । ସେଇ ହାସ୍ୟ ହିଁ ମୋର ଶୃଙ୍ଗାର—ଆଉ
ମୋର ଶୃଙ୍ଗାର ହିଁ ଏକ ବିଭତ୍ସ ହାସ୍ୟୋଦ୍ଦୀପକ ସୃଷ୍ଟି ।
ଦୁଇ ଶ୍ରେଷ୍ଠ ରସର ସଂଯୋଗ, ସଂଗମ—ସମାହାର—
ଗୋଟିଏ ଜୀବନରେ ।
ଯୋଗୀ ଓ ଭୋଗୀ ମୁଁ ଜଣେ । ଯୋଗରେ ହିଁ ମୋର
ଭୋଗ । ଭୋଗହିଁ ମୋର ଯୋଗ । ମୁଁ କବି । ହିଁ,
ବୋଧହୁଏ ମୁଁ କବି ।

କବି ତ୍ୟାଗୀ ନୁହେଁ । କିନ୍ତୁ ତାର ଜୀବନର ପ୍ରତି
ଛନ୍ଦରେ ତ୍ୟାଗର ଗୀତା-ସଙ୍କୀର୍ତ୍ତନର ଚରମପଦ ।
ତା'ର ଗୁମ୍ଫ ଉପରେ ଯାହା ବିତିଯାଏ ସେ କଣ ତାହା
ଲେଖେ ? —ଲେଖିପାରେ ? ଯାହା ତାହାର ଲୁହରେ,
କୋହରେ ଉଡ଼ି ନ ଯାଇ ବାକି ରହିଯାଏ ବଳକା
ବାସୀ ହୋଇ, ଗୋଡପାହାନ୍ତର ବୃକୁଫଟା ଗଗଭିତରେ
ଜାଗିଉଠି ଯେଉଁ ଚମକ ଆସନ୍ତାକାଲିର ପାଣ୍ଡୁଲି
ଶେଯ ଉପରେ ଡେଇଁ ଡେଇଁ ବୁଲୁଥାଏ—ସେତକ,
ମାତ୍ର ସେଇତକ ହିଁ ଛନ୍ଦର କବିର କାବ୍ୟ । ଆଉ
ସେଇ ଛନ୍ଦୋବଦ୍ଧ ଚମକ ହିଁ କବିର ଜୀବନ । ଜୀବନୀ
ଓ ଜୀବନ । କାବ୍ୟ ଓ କବି ।
ଜୀବନ ମଧ୍ୟ ନୁହେଁ । ସେ କେବଳ ଏକ ଉତ୍ସର୍ଗ—
ଜୀବନୋତ୍ସର୍ଗ ।

ସେ ଯାଏ ଜୀବନକୁ ପର ପାଇଁ ଉତ୍ସର୍ଗ କରିଦେବାକୁ ।
ମାତ୍ର ପରିଶେଷରେ ଦାତା ଓ ଗ୍ରହୀତା ଉଭୟେ
ଏକାକାର ହୋଇ ଉଭାଇଯାନ୍ତି । ରହିଯାଏ କେବଳ
ଉତ୍ସର୍ଗ—ଉତ୍ସର୍ଗର ମନ୍ତ୍ରପାଠ ।

ଉପାସ୍ୟ ନୁହେଁ—ଉପାସକ ନୁହେଁ—ମହାଜାଗରର
ମହାଗୀତ ସେ ।

ସେ ଏକ ଆତ୍ମଘାତୀ ପୁରୁଷ । ଆତ୍ମହତ୍ୟାରେ ହିଁ ସେ
ଆହତ ଜୀବନର ଉଦ୍ଧାର କଳ୍ପନା କରେ । ପ୍ରଳୟ
ତାଣ୍ଡବର ତାଳେ ତାଳେ ନବସୃଜନର ଅଙ୍କୁରୋଦ୍‌ଗମ
ହୁଏ । ସେ ନଜକୁ ନଜେ ପ୍ରଣିପାତ କରି କହେ—
"ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ।"

ସେଇ କଳ୍ପତରୁତଳେ ଯେତେକ କଳ୍ପନା—ଯେତେ
ସୁଖଦୁଃଖ ସ୍ୱାହାସ୍ୱଧା—ବାହାବା ଓ ହାହାକାର—
ସବୁ ପ୍ରତିଫଳିତ ହୋଇଯାଏ ତାର ଜୀବନରେ ।
ଅନ୍ୟର ହସ କାନ୍ଦ, ତା'ର ଆପଣାର ହୋଇଯାଏ—
ଏକାନ୍ତ ଆପଣାର । ପର ପାଇଁ ସେ କାନ୍ଦେ—ପର
ପାଇଁ ସେ ହସେ—ଅକାରଣରେ ପୁଣି ।

କବି ବାକ୍‌ସିଦ୍ଧ । ଯାହା କହିଯାଏ—ତାହା ଫଳିଯାଏ
ନ କହିଣୁ ।

କବି ଦୂରଦ୍ରଷ୍ଟା—କ୍ରାନ୍ତଦର୍ଶୀ—ସର୍ବଜ୍ଞ ।
ଜ୍ଞାନରେ ହିଁ ତାର ଦୃଷ୍ଟି । ଦୃଷ୍ଟିରେ ହିଁ ତାର ସୃଷ୍ଟି ।
ସେହି ସୃଷ୍ଟି ପୁଣି ସତତ ରସାନ୍ୱିତ ।
ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟ ବିମୂର୍ତ୍ତି ହିଁ କବିର
ପ୍ରକୃତ ପ୍ରତିକୃତି ।

କବି ପୁରାଣ—ଅଣୋରଣୀୟାଂସମ୍ ।

ପରମ୍ପରାର ସ୍ଥିତି ଓ ଅଭିନବତ୍ୱର ଗତି ଭିତରେ
ସୂକ୍ଷ୍ମାତିସୂକ୍ଷ୍ମତାର ଅବସ୍ଥିତି ।

କବି ତେଣୁ ଯୋଗୀ ନୁହେଁ, ସଂଯୋଗୀ—ବନ୍ଧନ
ନୁହେଁ ସଂବନ୍ଧ—ହୁଏତ ସଂବନ୍ଧର ବନ୍ଧନ । ବୋଧନ
ସଂବୋଧନ ଉଦ୍ଭୂତ । ସଂବୋଧନରେ ହିଁ ତାର ବୋଧନ
କବି ବୁଦ୍ଧ ନୁହେଁ ଉଦ୍‌ବୁଦ୍ଧ ।

ସୂର୍ଯ୍ୟ ଉଇଁ ଆସୁଛି । ଉଇଁ ଉଇଁ ଆସୁଛି । ଆକାଶର
କାନ୍ତିଚକ୍ର । ଆଖି ଆଗରେ । ହେଉଛି !
ସବୁ ପାଣିକୁ ଗୁଣିଆଣି ଦିଗବଧୂର ପଣତକାନରେ କିଏ
ଯେମିତି ଗୁଞ୍ଜିଦେଇ ଯାଉଛି । ଆଖି କାନ ପାଟି ନାକ
କିଛି ନ ମାନି—ଜାଣିଶୁଣି ଅତରଛରେ । ଗୋଟା ମନେ
ଗାଧୋଇ ହେଉପଡୁଛି କିରଣଜାଲରେ ।
ଦେହଯାକ ଓଦା ସରସର । ଦିଶୁନାହିଁ ? ବୁଝିପାରୁନା ?

ପୃଥିବୀ ଓ ଆକାଶ ଯେଉଁଠି ମିଶି-ମିଶି ଯାଉଛି, ସେଇଠି
ଦିଗବେଦୀ ଉପରେ ଯେଉଁଠି ଆକାଶ ମେଘମାର
ହାତଗଣ୍ଠି ପଡୁଛି—ସେଇଠି ।
ସେଇଠି ଯେମିତି କିଏ ମିଳନ-ସ୍ୱପ୍ନର ଆଳାପ ଧରି
ବସିଛି ।
କବି ଓ କଳ୍ପନାର ମିଳନ ।
ଦ୍ୟୋତକ ଓ ଦ୍ୟୁତିର ସଂଯୋଗ—ଦୀପକ ଓ ଦୀପାଳିର
ସଂବନ୍ଧରେ ।

ସୂର୍ଯ୍ୟ ଡେଇଁପଡ଼ୁଛନ୍ତି—ଦୀପ ଜଳିଉଠୁଛି ।
ପୁରାତନ ଆକାଶରେ ନିତି ନିତି ନବତନ ସୂର୍ଯ୍ୟ ।
ପୁରୁଣା ଦୀପାବଳୀରେ ନୂଆ ନୂଆ ଦୀପ୍ତି । କବିର
ଆବିର୍ଭାବରେ ।

ପୁରୁଣାର ଋଣ ଯେବେ ସେ ପୁରାଣ । ନୂତନର
ତନୁତଳେ ସେ ସନାତନ । ସେଇ ତାର ଆଖ୍ୟା ।

ସେ ସାକାର ମଧ୍ୟରେ ନିରାକାର । ସୂକ୍ଷ୍ମାତିସୂକ୍ଷ୍ମ ପୁରୁଷ ।
ସବସ୍ତୁ'ର ବସ୍ତୁ ।
ନିର୍ବିକାର ନିର୍ବିକଳ୍ପ କଳ୍ପତରୁ ମହେଶ୍ୱର ।
ନିଜେ ନିଜର ସ୍ରଷ୍ଟା—ନିଜ ଭାଗ୍ୟର ନିୟନ୍ତା—ନିଜେ
ନିଜର ବ୍ୟାପ୍ତିରେ ପରିବନ୍ଧ—ଆବନ୍ଧ—ଚତୁର୍ମୁଖ
ବ୍ରହ୍ମା ।
ସେ ଆତ୍ମା ନୁହେଁ—ପରମାତ୍ମା ନୁହେଁ—ଏକ
ପାରମାତ୍ମିକ ଆତ୍ମା ।

ସେଇ ପୁରାଣପୁରୁଷ ପରିଭୂ—ସ୍ୱୟଂଭୂ କଣ ମୁଁ ?
ମୁଁ କଣ କବି ?
ନା-ନା, ମୁଁ କେବଳ ତମର ମୁଁ ।
ସେଥିତାଇଁ ମୋ ମନରେ ଯେତେ କଥା ଉଠେ, ସେସବୁ
ତମର ଓ ମୋର । ଉଭୟଙ୍କର ।
କାରଣ, ମୁଁ ଏକ ନୁହେଁ ଅନେକ । ଆଉ ତମେ
ଅନେକ ହୋଇ ଏକ ।

ସେଇଥିପାଇଁ ସବୁ ଭୁଲ ବୁଝାମଣା । ସେଥିପାଇଁ ତ
ତାକୁ ଭୁଲ୍ ବୁଝନ୍ତି ଲୋକେ ।
ହେବାର ଅଭିମାନ ତାର ଥାଏ ନାହିଁ ହୋଲ

ବୋଧହୁଏ ସବୁ ଭୁଲ୍ ହୋଇଯାଏ ସମସ୍ତଙ୍କର । କହ
କେବଳ ଦିଏ—ଦେଇଯାଏ—ଦେଇ ଜାଣେ ବୋଲି
ଦିଏ— ନ ଦେଇ ରହିପାରେ ନାହିଁ ବୋଲି ଦିଏ ।
ସେ ଦାନମୁଖ୍ୟ । ଦାନ ହିଁ ତାର ଆମୋଦ, ଆନନ୍ଦ,
ବିଳାସ । ପାତ୍ର-ଅପାତ୍ରର ବିଚାର ନ ଥାଏ ତାର ।
ସେଥିପାଇଁ ବୁଝିବାରେ ଭୁଲ୍ ହୋଇଯାଏ, ଅନେକଙ୍କର
ସମସ୍ତଙ୍କର—ପ୍ରାପ୍ତ ସମସ୍ତଙ୍କର ।

ଦେବା ହିଁ ତାର ସ୍ୱଭାବ—ଦାନ ହିଁ ତାର ସ୍ୱରୂପ ।
ସେ କଣ ଦେଇଯାଏ ହୁଏତ ନିଜେ ମଧ୍ୟ ଜାଣେ ନ ।
ସେଥିପାଇଁ ଦେଉଁ ଦେଉଁ ସେ ସର୍ବସ୍ୱ ଦେଇଦିଏ—
ସବୁ ଉଜାଡ଼ି କରି ।

ନିଜର ସୁନାମଟିକୁ ମଧ୍ୟ । ସେତିକ ବାକି ଥାଏ
ଶେଷକୁ । ଶେଷରେ ଦେବାପାଇଁ ।

ମୋ ଜୀବନରେ ହୁଏତ ସେଇଆ ଘଟିଛି । ବୋଧହୁଏ
ସେଇଆ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଏଥିରେ ।
ମୁଁ ଆଶ୍ଚର୍ଯ୍ୟ ହୁଏ ନାହିଁ ।

ସମୟର ତଳିତଳେ କେତେ ଘଟଣା ଜୀବନର—ଭାଙ୍ଗି
ଭାଙ୍ଗି ପଡ଼ିଛି—ଏଠି-ସେଠି ଛିଟିକି ପଡ଼ିଛି ଘରଆଡ଼େ ।
ହାତରୁ ଖସି ପଡ଼ି ଛିଡ଼ୁ ହୋଇଗଲାପରି କାଚବାସନ
ସବୁ ।

ଚକମକି ମାରୁଛି । ଗୋଟିଏ ଗୋଟିଏ କଥାରୁ ଅସଂଖ୍ୟ
କାହାଣୀ ସୃଷ୍ଟି ହୋଇଯାଇଛି । ଗୋଟିଏ ସୂତାରୁ
ସହସ୍ର ଖିଅ । ସେ ସବୁ ନାହିଁ । ସଞ୍ଜଗଲେ ଯେମିତି
ମୁଣ୍ଡକାଟ । ଆରବ୍ୟ ଉପନ୍ୟାସ ପରି !

ବିଚିତ୍ର ନୁହେଁ—ଏଇଟାଇ ସହଜ ସତ୍ୟ ।

କିଏ ଦୋଷ ଦିଏ । କିଏ ଗୁଣ ବି ଗାଏ । ସେ ସମସ୍ତେ
ମୋର ଅତି ଆପଣାର—ମୋ'ର ଦୋଷ ଗୁଣ ପରି ।

ମୋ'ର ଦୋଷ, ମୋ'ର ଗୁଣ, ଯେତେ ଯାହା—ସବୁକୁ
ଆଦୋର ନେଇଛନ୍ତି ସେମାନେ । ନିଜର କରି ଗାଇ
ବୁଲୁଛନ୍ତି—ନିଜ କଣ୍ଠରେ । ସେଇ ତ ସଂକୀର୍ତ୍ତନ ।
ସେମାନେ କଣ ମୋତେ ଭୁଲିପାରିବେ କେବେ ?
ଭୁଲିଗଲେ ଯେ ସରିଯିବ ନାଟ । ଭାଙ୍ଗିଯିବ ହାଟ—
ଲୁହାଟ ।

ଦୁଃଖ କେଉଁଠି ଜାଣିଛ ! ସେମାନେ ଯାହା ପାଇଛନ୍ତି,
ତା' ନେଇଛନ୍ତି । ମୁଁ ଯାହା ଦେଇଛି, ତାକୁ ନେବା
ପାଇଁ ହାତ ପାତି ନାହାନ୍ତି ।

ହିଁ, କହିଥିଲି ପରା—କବି ହଏ । କିନ୍ତୁ ତାକୁ ନିଅନ୍ତି
କେଇ ଜଣ ?

ପୁଣି କଏ ନେବାକୁ ମନ କରି ନେଇ ବି ପାରେ
ନାହିଁ ଭଲକି ।

କାହିଁକି ଜାଣିଚ ? କବିର ଭଲଟାକୁ ପାଇବାକୁ
ଲୁହାନ୍ତି ସେମାନେ । କବିକୁ ଭଲ ପାଇବାର ମନ
ଯେନ ଆସନ୍ତି କ୍ୱଚିତ୍ । କବିକୁ ଭଲ ନ ପାଇ କବିର
ଭଲଟାକୁ ନେଇ ହୁଏ ନାହିଁ ଭଲକରି ।

କବିର କାବ୍ୟକୁ ଭୋଗ କରି କବିକୁ ଭଲ ନ ପାଇ
କଣ ରହିହେବ ? କିମ୍ବା କବିକୁ ଭଲ ନ ପାଇ
କଣ କବିର କାବ୍ୟକୁ ଭୋଗ କରିପାରିବ କେମିତି ?

ସୃଷ୍ଟି ଓ ସ୍ରଷ୍ଟା ଏକ । କବି ଓ କାବ୍ୟ ଅଦ୍ୱୈତ—
ସହାଦ୍ୱୈତଭାବରେ ଅଦ୍ୱୈତ ।

ମୋର ଦାନକୁ ଅସ୍ୱୀକାର କରି ମୋତେ ଯେ ସ୍ୱୀକୃତି
ଦିଏ କିମ୍ବା ମୋତେ ସ୍ୱୀକୃତି ଦେଇ ଯେ ମୋର ଦାନର
ମହିମାକୁ ଅସ୍ୱୀକାର କରେ—ମୁଁ ଭୟ କରେଁ ତାକୁ ।

ତା'ଠାରୁ ଦୂରରେ ରହିବାକୁ ଚାହେଁ ମୁଁ —
ବହୁ ଦୂରରେ ।

କାରଣ, କବର କୃତି ଯେଉଁ ପଣ୍ୟ ହୋଇଯାଏ । କବି ହୋଇଯାଏ ଗଣିକାଶ୍ରେଣୀଭୁକ୍ତ ଗଣ୍ୟ ସେ କେବଳ ବିଳାସୀ ବିଳାସିମାନଙ୍କର ବିଳାସସାମଗ୍ରୀ ସହ ସମାନ ।

ଯେଉଁଠି କବର କୃତି ବିଳାସୀ ମନକୁ କେବଳ ଖୋରାକ ଯୋଗାଇ କର୍ତ୍ତବ୍ୟ ଶେଷ କରେ, ସେଠି କବିକୁ ଚରିତ୍ରହୀନ କହିବାରେ ମୋର ଆପତ୍ତି ନାହିଁ । ମୋର ଲେଖା ଯଦି କୌଣସି ନିର୍ମଳ ମନକୁ କଳୁଷିତ କରିଥାଏ, କୌଣସି ଛନ୍ଦାୟିତ ଗ୍ରାହକର ରସ ଆସ୍ୱାଦନ ଅଧିକାଂଶ ମନକୁ ଚଞ୍ଚଳ କରିଥାଏ, ତେବେ ମୁଁ ମଧ୍ୟ ଚରିତ୍ରହୀନ । ମୁଁ ଚରିତ୍ରହୀନ—କବି ନୁହେଁ । ମୁଁ ଭୋଗ୍ୟ—ଯୋଗ୍ୟ ନୁହେଁ । ରମ୍ୟ—କାମ୍ୟ ନୁହେଁ ।

କିନ୍ତୁ—କିନ୍ତୁ—ସମସ୍ତେ କଣ ମୋତେ ଠିକ୍ ଠିକ୍ ବୁଝିବାକୁ ଚେଷ୍ଟା କରି ଏଇ ସିଦ୍ଧାନ୍ତରେ ପହଞ୍ଚିଛନ୍ତି— ଯେଉଁମାନେ ମୋତେ ଚରିତ୍ରହୀନ କହି ତମ ଆଗରେ, କଷ୍ଟ ଦେଇଛନ୍ତି ତମକୁ ? ସେମାନେ କଣ ସମସ୍ତେ ସମର୍ଥ ବ୍ୟକ୍ତି କାବ୍ୟରସ ଆସ୍ୱାଦନରେ ?

ଅନେକ ଅଛନ୍ତି ଯେଉଁମାନେ ଭଲ ଜିନିଷ ପାଇଲେ ନଜର କରିବାକୁ ଚାହାନ୍ତି, କିନ୍ତୁ ନିଜସ୍ୱ କରିପାରନ୍ତି ନାହିଁ; ସେଇଠି ସବୁ ଗୋଳମାଳ ଲାଗେ । ନଜର କରି ମଣିଷ ଭଲ ପାଇପାରେ କିନ୍ତୁ ଭଲ ଦେଇପାରେ ନାହିଁ ନିଜସ୍ୱ ନ କଲାଯାଏଁ ।

ନ ଖୋଇ ଖାଇବାରେ କି ତୃପ୍ତି ? ନିଶା ଅମଳ କଲା ଲୋକ ବି ତୃପ୍ତି ପାଏ ନାହିଁ—

୧୬

ଅନ୍ୟକୁ ନ ଖୁଆଇଲେ । କାବ୍ୟରସ ତ
ଆତୁର ବଡ଼ ନିଶା, ଉଦ୍ଭଟ ଅମଳ ।

କବିର ବୃତ୍ତିକୁ ନିଜର ପ୍ରବୃତ୍ତିରେ ଫକାଇ ନ ଦେଖିଲେ
ତାର ପ୍ରକୃତ ଆକୃତି ଦେଖିହୁଏ ନାହିଁ । ପ୍ରକୃତ
ଶବ୍ଦ ନ ଦେଖି ଚରିତ୍ର ଚିତ୍ରଣ କଲେ ସବୁ ବିଚିତ୍ର
ହୋଇଯାଏ ।

ପ୍ରକୃତି ପୁଣି ପରିଚ୍ଛନ୍ନ ନ ହେଲେ କାବ୍ୟର ଦ୍ରବ୍ୟ
ବାସ୍ତବ ରୂପ ପ୍ରତିଫଳନ ହୁଏ ନାହିଁ ସହଜରେ ।
ସେ ପରିଚ୍ଛନ୍ନତା ସାଧନାରେ ହୁଏ—ପ୍ରସାଧନାରେ
ନୁହେଁ । ସେ କେବଳ ପ୍ରେରଣାରୁ ସଂଭୂତ—
ପ୍ରତାରଣାରୁ ନୁହେ ।

କାବ୍ୟ ଓ କାବ୍ୟର ଲାଳସା ଅଧୋମୁଖୀ ହୋଇପାରେ
ଊର୍ଦ୍ଧ୍ୱମୁଖୀ ମଧ୍ୟ ହୋଇପାରେ । କିନ୍ତୁ ପ୍ରତାରଣା
ସର୍ବଦା ନିମ୍ନଗାମୀ ।

ମୋର କାବ୍ୟ କାହାକୁ ଚରିତହୀନ କରିପାରିଥାଏ—
କିନ୍ତୁ ମୋ କାବ୍ୟର କୌଣସି ଚରିତ୍ର ପ୍ରତାରଣା
କରି ନ ଥିବ କାହାକୁ—ମୋର ଯେତେଦୂର ମନେ
ହୁଏ ।

ମୋତେ ତେଣୁ ଚରିତହୀନ କହିପାର—ମାତ୍ର
ପ୍ରତାରକ କହ ନାହିଁ । ପ୍ରତାରକ କହିଲେ ମୋର
ଦୁଃଖ ହେବ । ତେବେ ତ ମୁଁ ଅବିକଳ ପ୍ରମାଣିତ
ହୋଇଯିବି ଆପେ ଆପେ ।

ମୁଁ ଯେତେବେଳେ ଯାହା ଦେଇଛି—ଯାହାକୁ ଯାହା
ଦେଇଛି—ସେଥିରେ ପ୍ରତାରଣାର ଗନ୍ଧ ନାହିଁ ।

ପ୍ରଚାରଣା କରିପାରିଥିଲେ
ହୁଏତ ଅନେକ ମୋତେ ତିରସ୍କାର କରନ୍ତୁ ନ ଥାନ୍ତେ;
କିନ୍ତୁ ମୁଁ ଜାଣେ, କପଟ ହୃଦୟପଟ୍ଟରେ କବିତାର
ପ୍ରତିଫଳନ ଅସମ୍ଭବ—ଏକାବେଳକେ ଅସମ୍ଭବ ।

କାବ୍ୟ ଓ କପଟତା ମଧ୍ୟରେ ସପତ୍ନୀକ ସଂବନ୍ଧ ।

କୈତବରେ ମଧୁ ଥାଇପାରେ ।
ମାତ୍ର ସେ ମଧୁରସ ନୁହେଁ ।
ମଧୁ କୈଟଭ ।

ଜଡ଼ତାରୁ ତାର ସଂଭୂତି ।
ସେ ଜଡ଼ କୈତବ କବଳରୁ ମୁକ୍ତ ନ ମିଳିଲେ ଦେବତା
ଉଦ୍ଧାର ହୁଏ ନାହିଁ—ଚୈତନ୍ୟର ବିକାଶ ହୁଏ ନାହିଁ ।
ଜଡ଼ତାର ବିନାଶ ହୁଏ ନାହିଁ ।

କବି ଯେ ସ୍ୱୟଂ ମହାଚୈତନ୍ୟର ମହାପ୍ରସାଦ ।
ଅବିରତ ବର୍ଷଣପର ତାର କାବ୍ୟଧାରା ।
ତାର କୃପା-ବାରି । କେବଳ ଧାରଣ କରିବାର
ସାମର୍ଥ୍ୟ ହିଁ ଗ୍ରାହକର ସାଧ୍ୟ ଓ ସାଧନା ।

କବିର ଦାନ ତେଣୁ ନିଷ୍କପଟ—ନିଷ୍କଳଙ୍କ । ସେ
ଯେ ଭବର ଦାନ —ଚିନ୍ତନର ସଂପ୍ରଦାନ—
ଅପାଦାନର ଅପେକ୍ଷାରେ । ସେଥିରେ କୁଣ୍ଠା ନାହିଁ—
କେବଳ ମାତ୍ର ଉତ୍କଣ୍ଠା ।

ଜ୍ଞାନୀ ଜ୍ଞାନଦାନରେ କୃପଣ ହୋଇପାରେ—
ପ୍ରତିଫଳର ଆଶାରଖି । କିନ୍ତୁ କବି ସର୍ବଦା ଅକୃପଣ ।
ଖାଲି ଭବରେ ନୁହେଁ, କେବଳ ଦାନରେ ନୁହେଁ—
ଭବଦାନର ଆନନ୍ଦରେ ହିଁ ସେ ସତତ ବିଭୋର ।

ଆତ୍ମଦାନରେ, ଆତ୍ମାରତିରେ ସେ ଆତ୍ମହରା ।

ସଂପ୍ରଦାନରେ ତାର ଆନନ୍ଦ—ସଂପାଦନରେ ହିଁ ତାର ସିଦ୍ଧି । ଆକାଶର ବାରିବର୍ଷି ପରି । ସତତ ବର୍ଷଣପର ।

ପତନର ଛନ୍ଦ ହିଁ ତାର ଗ୍ରନ୍ଥ । ଉଷର ଉର୍ବର ନିର୍ବିଶେଷରେ ପୁଲକାଞ୍ଚିତ ସିଞ୍ଚନ ହିଁ ତାର ପ୍ରାନ୍ତ୍ୟାନୁପ୍ରାସ । ଆଉ ନିର୍ମଳ ମନ ପବନର ଅଲ୍ୟେଳ ଗତି ମଧ୍ୟରେ ହିଁ ତାର ଯତିପାତ ।

ଆଧାର ଅନୁଯାୟୀ ବେଗ । ପାତ୍ରାନୁସାରୀ ଅନୁଭବ । ଗ୍ରାହକର ଅନୁଭବରେ ହିଁ ତାର ଭାବର ଉଦ୍ଭାବନା ।

କବିକୁ ଚରିତହୀନ କହି ଯଦି କାହାର ପ୍ରବୃତ୍ତିର ଚରିତାର୍ଥ ହୁଏ—ତେବେ ମଧ୍ୟ କବିର କୃତି ଅସାର୍ଥକ ନୁହେଁ ।

କିନ୍ତୁ ଯେ କହେ—କବି ନିଃସ୍ୱ—ସେଇ କେବଳ ଚିହ୍ନେ କବିକୁ । ତାର ଦାନରେ ତାର ସଂବେଦନରେ କବି ହୃଦୟରେ ଖେଦ ଓ ବେଦନା, ଆନନ୍ଦ ଓ ଉନ୍ମାଦନା ପରିପୂର୍ଣ୍ଣ ହୋଇଯାଏ ।

ଯେ ଚିହ୍ନେ, ସେଇ ପାଏ ଆନନ୍ଦ; ସେଇ ଦେଖେ ଜଗତ୍ ନିତ୍ୟାନନ୍ଦମୟ ।

କବିର ଉଚ୍ଚାରିତ ପ୍ରତ୍ୟେକ ଶବ୍ଦ କେବଳ ଗଦ ବା ପଦ୍ୟ ନୁହେଁ—ବିଷାଦର ବିଷାପହାରୀ ଗଦ ମନ୍ତ୍ରଣ । ରସଗ୍ରାହୀର ଆଗ୍ରହାନୁଯାୟୀ ସେ ନବ ନବ ବିଗ୍ରହର ରୂପ ପରିଗ୍ରହ କରେ ।

କବି ପ୍ରତିକ୍ଷ୍ୟା ଓ ମନୀଷାରେ ହିଁ ଦିବ୍ୟବର୍ଣ୍ଣନ କରେ ।

## ୧୫

ସେ ନିରପେକ୍ଷ ପୁରୁଷ । ସେଥିପାଇଁ କହୁଥିଲି ।

କର୍ଷିତ କେଦାର ନ ହେଲେ କାବ୍ୟର ଅଙ୍କୁର ଉଦ୍‌ଗମ ଅସମ୍ଭବ ।

ମୋତେ ସେ ଯେତେ ଚରିତ୍ରହୀନ କହୁ ପଛେ—ମୁଁ ଜାଣେ, ମୁଁ ବହୁ ଚରିତ୍ରରେ ବିମଣ୍ଡିତ—ଅତଏବ ଚରିତ୍ରବାନ୍ ପୁରୁଷ—ତମର ପ୍ରଣୟୀ ।

ମୋତେ ତମେ କବି ନ କହ । ମୁଁ ଚାହେଁ ନାହିଁ ତମ ମୁହଁରୁ ସେ ସଂବୋଧନ ଶୁଣିବାକୁ । ମୁଁ ଓସ କେବଳ ଗୋଟାଏ ସମ୍ବନ୍ଧ । ମୁଁ କେବଳ ତମର—'ମୁଁ' ।

# କବି-ପ୍ରିୟା

ତମେ ମୋତେ ଭଲ ପାଅ । କାହାକୁ କେବେହେଲେ ଏପରି ଭଲ ପାଇ ନ ଥିବ ଜୀବନରେ—ଏପରି ନିବିଡ଼ ଭାବରେ । ଖୁବ୍ ଭଲ ପାଅ ମୋତେ । ନୁହେଁ ?

କିନ୍ତୁ କାହିଁକି ? କହିପାରିବ ତମେ !

ମୋତେ ଜଣେ କବି ବୋଲି ଧରି ନେଇଛ, ସେଥିପାଇଁ ବୋଧହୁଏ ।

କିନ୍ତୁ ସେଇଟା ତମର ଭୁଲ୍ । ମୁଁ କବି ହୋଇପାରି ନାହିଁ । ସେ ସାଧନା ପଥରୁ ମୁଁ କିଜାଣି କେମିତି ଦୂରେଇ ଯାଇଛି । ଚାଲିଗଲିଣି ବହୁତ ଦୂରକୁ । ପଛକୁ ଚାହିଁଲେ ଡର ମାଡ଼େ ।

ଦିନ ଥିଲା । କବି ହେବାର ଲାଳସା ଘେନି ମୁଁ କେତେ କଣ ଅସାଧ ସାଧୁଥିଲି । କିଏ କବୀନ୍ଦ୍ର ଆସି ସ୍ନେ ସାଧନା ମୋର ପଣ୍ଡ କରି ଦେଇଛି । ସେ କିଏନାହିଁ । କରିଛନ୍ତି କେତେ ମେନକା ଉର୍ବଶୀ ଆସି ।

ସେ ସବୁ କେହି ନାହାନ୍ତି ଆଜି । କେଉଁ ସ୍ୱର୍ଗରେ ଥିବେ ଅବା । କିନ୍ତୁ ଦେଇଯାଇଛନ୍ତି ଏକେ ଏକେ ଗୋଟିଏ ଗୋଟିଏ ମାନସ-ସନ୍ତାନ । ତାଙ୍କର ଖବର ବି ନାହିଁ ମୋ ପାଖରେ । କେଉଁ କଣ୍ୱ ମୁନି ଆଶ୍ରମରେ ସେସବୁ ହୁଏତ ଜଣେ ଜଣେ ଋଷି-କନ୍ୟା— ଶକୁନ୍ତଳା ।

କିନ୍ତୁ ବିଶ୍ୱାମିତ୍ର ରହିଗଲେ ରାଜର୍ଷି ହୋଇ । ହୁଏତ ମହର୍ଷି ହୋଇପାରନ୍ତି; କିନ୍ତୁ ବ୍ରହ୍ମର୍ଷି ହେବା ନୋହିଲା ।

ମୋର ଭସ୍ମ ହୁଏ—ସେଇଭଳି ଗୋଟିଏ ତପୋଭ୍ରଷ୍ଟ ବ୍ୟର୍ଥମନୋରଥ ବ୍ୟକ୍ତିଠାରେ ଭକ୍ତି ଓ ପ୍ରୀତି ଅର୍ପଣ କରି ଯେଉଁ ଭୁଲ୍ କରିଛ ଜୀବନରେ, ତାର ସଂଶୋଧନ ଆହୁରି ଦୁରୂହ ହୋଇ ପଡ଼ିବ—ଭଲ ପାଇବାଠାରୁ ।

ଜାଣିଛ ? ତମେ ଯଦି ମୋତେ ଜଣେ ବୋଲି ଭଲ ପାଇଥାଅ ପ୍ରକୃତରେ; ଆଉ ମୋ'ଠି ଯଦି ଜଣକର ସାମାନ୍ୟ କଳା ଲାଗିଯାଇଥାଏ କେଉଁଠି, ତେବେ ତ ଆହୁରି ବିପଦ । ଜଣକୁ ଭଲ ପାଇବାର ସାଧନାଠାରୁ ଭଲ ନ ପାଇବାର ସାଧନା ଆହୁରି ଅସାଧ୍ୟ । ଭୁଲ ବୁଝିଲେ ବି ଆଉ ଠିକ୍ କରି ହୁଏ ନାହିଁ ସହଜରେ ।

କାରଣ, ସେ ଭଲ ପାଇବା ପ୍ରଥମ ପକ୍ଷପାତରେ ଆସେ ନାହିଁ; ସେ ଭଲ ପାଇବା ଜାଗେ ପ୍ରଣୟ ପ୍ରଦର୍ଶନରେ । ସେ ନବାନୁରାଗ ଆରମ୍ଭରେ କେବଳ ସ୍ୱର ଉଠେ—'କି ନାମ ବୋଇଲୁ ତୁମ୍ଭ ଗୋ ଲଳିତେ !'

ବାସ୍ ସେତିକି । ସେତିକିରେ ଲାଗିଯାଏ ଗଣ୍ଠି । ସେ ଗଣ୍ଠି ଆଉ ଛୁଡ଼େ ନାହିଁ ଛୁଟିରୁ ।

ଲୁଚି ଲୁଚି ନାମ ଶୁଣୁ ଶୁଣୁ—ମନେ ମନେ ଗଢ଼େ ଥରେ ସେଇ ନାମକୁ ଗୁଣୁ ଗୁଣୁ, ଅନ୍ତର ଧରେ ଆଉ ସବୁଥିରେ—ସେଇ ନାମ ଛଡ଼ା । ସେଇ ଛନ୍ଦର ସାଧରେ ବାଧା ଦେଲେ ସ୍ୱଧାର ଯେ କି ଆରତି, ତା' କଣ ଜାଣିନାହଁ ତମେ ? ସେ ତ ଆରତି ନୁହେଁ—ସେ ଏକ ଅଭିନବ ରତି । ରୂପରେ ନୁହେଁ—ନାମରେ ।

ଖାଲି ଶୁଣିବାରେ ନୁହେଁ, ଗୁଣ ଗଣିବାରେ ନୁହେଁ, ଗୁଣିବାରେ ବି ନୁହେଁ, ମନ ଭଳସିବାରେ ନୁହେଁ କି ଖାଲି ଭଲ ହେବାରେ ନୁହେଁ, ସବୁ ଭାଲଭୁଲ ଅଜାଡ଼ି ଦେଇ, ସେଇ ସ୍ମୃତିର ଛାତିରେ ସେକ ସେକ ଯେତେବେଳେ ରକ୍ତଟା ପୁଣି ଗାଢ଼ ହୋଇଆସେ, କ୍ଷୀର ଭଳି, ସେତେବେଳେ ଯାହିଁ ହୁଏ—ତମେ ଯାହା କହିବାକୁ ଲାଜ କର, ଲୁଚାଇ ରଖ ସ୍ମୃତି ଭିତରେ—ସେ ଯେଉଁ ଅଭିଭୂତି—ସେଇ ଅଭିନବ ଅନୁଭୂତି—ସମସ୍ତେ ଯାହାକୁ କହନ୍ତି—ହଁ, ସେଇଆ—ମାନେ—'ପ୍ରେମ' ।

ଏଇ ପ୍ରେମକୁ ତମେ 'ଭଲ ପାଇବା' ବୋଲି କହ ! କିନ୍ତୁ ସେ ତ ଭଲ ପାଇବା ନୁହେଁ ଖାଲି । କବ ପ୍ରେମରୁ ଖାଲି ଭଲ ପାଇବା ନ ଥାଏ—କବ ପ୍ରେମ ଭଲ ପାଇବାରୁ ଗଜାଏ ନାହିଁ—ଭଲ ଦେବାରୁ ସେ ଉଠେ—ଆଉ ଉଧାଏ ବି ।

ସେଥିରୁ ଭଲ ମିଳେ ଆପେ ଆପେ । କିନ୍ତୁ ସେ ଭଲ ନେବାରେ ପ୍ରତି-ଆଶା ଥିଲେ ଆଉ ଉଧାଏ ନାହିଁ । ଫଳକୁ ଚାହିଁବସିଲେ ସେ ବିଫଳ ହୁଏ । ଆଶାର କୀଟ ମଞ୍ଜିକି ଖାଇଯାଏ—ଟିକି ଟିକି କାଟି ପକାଏ—ଶେଷା ଗୁଣ୍ଡ଼ଯାଏ ଖାଲି ।

ବାସନା କାମନା ଖାଲି ମନକୁ ଖାଏ ନାହିଁ—ପ୍ରେମକୁ ବି ଖାଏ । ମନର ପେଟ କାମନାରେ ପୂରିଗଲେ ଜଳ-ଉଦରୀ ଧରେ । କବିର ପ୍ରେମ-ପାଗଳଙ୍କୁ ହେଲେ ସେଥିପାଇଁ ଉପବାସ କରିବାକୁ ପଡ଼େ । ଉପବାସରେ ହିଁ କବି ନିକଟରେ ବାସ ମିଳେ । ନିର୍ଜଳା, ନିଷ୍ଠଳା, ନିରୁତା ଉପବାସ । ସବୁ କାମନା ବାସନା କଲୁଷାର

ବିକଳ୍ପରେ, ବିକଳ୍ପରେଇ ବଢ଼ାହୁଏ ଜୀବର
ଅବଢ଼-ଅମୃତ ମଣୋଦ୍ରୀ । ସେଇ ବିକଳ୍ପ ହିଁ
ଉପବାସର ଅନୁକଳ୍ପ । ବାସନାର ନାଶନରେ ହିଁ
ଜୀବର ଉପାସନା ।

ସେନ୍ଧି ପ୍ରେମର ଉପାସନା ଯେତେବେଳେ ହୃଦ
ଭିତରକୁ ଯୋକେଇପାଣି ଚକଟିମକଟି ଆଉଟି ପାଉଟି
ଛରକେଇ ଉସେଇ ମନ ଚଇତନ ସବୁଥିରେ ନେସି
ହେଇ, ବୋଳି ହେଇ, ଗୋଳି ହେଇଯାଏ,
ସେତେବେଳେ ସେ ଲେହ ଯେ—ସେନେହ । ସେ
ଦରବ—ସେ ଦ୍ରାବ ଖାଲି ଆଣିଦଏ ଜଳା ଆଉ
ପୋଡ଼ା—ଆହା ଆଜ ଉହୁ ।

ସେନ୍ଧି ଜ୍ୱଳନରେ ଜଗତ ଉଜ୍ଜ୍ୱଳ ହୋଇଉଠେ । ସ୍ନେହ
ରସରେ ସର ପଡ଼ି ସବୁ ଜଳଜଳ ଦିଶେ—ଅଭିଜ୍ଞାନ ।

ସେଥିରେ ଖାଲି ଜୀବ ନୁହେଁ—ନିଜର ପ୍ରତିବିମ୍ବ ବି
ଦିଶେ । ନୂଆ ନୂଆ ରସ ଆସ୍ୱାଦନର ଲାଳସା
ଜାଗେ । ସେ ଲାଳସା—ସେ ଲିପ୍‌ସା ବ୍ୟାହତ ହୁଏ ।
ମୁହଁ ବାନ୍ଧ ହୋଇଯାଏ । ରସର ଆତିଶଯ୍ୟରେ
ରସନା ରହିଯାଏ ଅଣସରରେ । ଦେଖାଦିଏ
ଦୁର୍ଜସ୍ତୁମାନ । ସେଇ ଅଦାକ୍ଷିଣ୍ୟ ଅସାମର୍ଥ୍ୟରୁ
ଅଭିମାନର ଆଭିଜାତ୍ୟ ।

ସେ ଜଳୁ ଅସାର ନୁହେଁ—ସାର । ତା'ର ଉପରେ
ବିଶ୍ୱାସର ବାରି ସିଞ୍ଚନ କଲେ ଯାଇଁ ପ୍ରଣୟାଙ୍କୁର
ଉଦ୍‌ଗମ ହୁଏ । ପୁଣି ଉଦ୍‌ଭିନ୍ନ ହୁଏ । ପ୍ରଣୟ ପ୍ରସୂନ
ଫୁଟିଉଠେ ଧୀରେ ଧୀରେ—ଯଥାସମୟରେ ନବ
କିଶଳୟର ଶୟୂଳରେ ମୂଞ୍ଜରିତ ହୋଇ ।

ସେଇ କେଳି-କଦମ୍ବ ତରୁତଳରେ ସ୍ୱପ୍ନାଲୋକର କ
ଲୁଚକାଳି ଖେଳ ! ଆଶା ଓ ଆଶଙ୍କାର ଯଉ-କଉଡ଼
ମୁଦ ଫିଟେ ନାହିଁ ସହଜରେ । ସେ ତ ସରାଗ ନୁହେଁ-
'ରାଗ' ।

ପୁଣି ମୁଠା ଯେତିକ ଯେତିକ ଟାଣ ହେଉଥାଏ, ଫିଟା
ସେତିକ ସେତିକ କୋହଳ ପଡ଼ିଆସେ । ରାଗ
ବଢ଼ିଯାଏ—ସରାଗ ଗଢ଼ିଯାଉଥାଏ ପଲ୍ଲୁଡ଼ ମସିଣୀ
ଉପରେ—ଉଡ଼ିଯାଉଥାଏ ଗଣ୍ଡିଆଳ ଉଲ୍ଲାସ
ସାଙ୍ଗରେ । ସେଇ ଅଭିବୃଦ୍ଧିରୁ—ଗାଢ଼ତର ପୁଣି
ଗୂଢ଼ତର ସମୃଦ୍ଧିରୁ ପ୍ରକଟିତ ହୁଏ 'ଅନୁରାଗ' ।

ସେଇ ଅନୁରାଗରେ ଗରଗର ବହ୍ନେର ହୋଇ ବିଶ୍ୱାସ
ଅବିଶ୍ୱାସ, ମିଳନ ବିରହ, ଆଶା ଓ ଆଶଙ୍କାକୁ
ନଣନ୍ଦପେଢ଼ି ଉପରେ ଫିଙ୍ଗିଦେଇ ବନ୍ଧ ଡେଇଁ
ଚାଲିଯାଏ କବିପ୍ରିୟା—ଦେହଳୀର ସେପାଖକୁ—
କୁଳଶୀଳ ଲାଜ ସରମ ଲଜାହୋମରେ ଜାଳିଦେଇ
କବିପ୍ରିୟା କବିଗତ-ପ୍ରାଣା ହୋଇଯାଏ—

କବିର କୁଳ ତାର କୁଳ, କବିର ଯଶ ତା'ର ଶୀଳ,
କବିର କୀର୍ତ୍ତି ତାର ହାସ୍ୟ, କୀର୍ତ୍ତନ ତାର ଲାସ୍ୟ,
କବିର ମୌନ ତାର ଲଜ୍ଜା, ତାର ସଙ୍କୋଚ ବୋଲି
ମନେ କରେ—କବି ସତ୍ତ୍ୱାତ ଯେତେବେଳେ ତାର
ତାଦାତ୍ମ୍ୟ, ସେତିକବେଳେ ।

ସେତିକବେଳେ—ସେଇ ଆପଣା ବାହାରୁ-ଭିତରର
ଅନନୁଭବ୍ୟ ଅନୁଭବ କି ଭାବ ।

କାବ୍ୟ ଆଉ କବିତା ? ସେ କେବଳ ସେଇ
ଭାବର ପ୍ରଭାବ ମାତ୍ର ।

ମୋତେ ଭଲପାଇ ତମର ଯଦି କେବେ ସେ
ଦିବ୍ୟଭାବ ଆସି ନ ଥିବ—ତେବେ ମୋର ମଧ୍ୟ
କବିତା ନ ଥିବ । ମୁଁ ନିଜକୁ କବି ବୋଲାଇବା, ବା
ତମେ ମୋତେ କବି ଡାକିବା ନିରର୍ଥକ ।

କିନ୍ତୁ ଯିଏ ଥରେ ସେ ଭାବ ପାଇଛି, ଯାହା ଦେହରେ
ମନରେ ବିଚିଆଡ଼େ ସେ ଭାବ ନିଜର ସ୍ୱଭାବ ପରି
ଚରିଯାଇଛି, ଜାଣିତରେ ହେଉ ଅଜାଣିତରେ ହେଉ,
ତାର ଆଉ ଆନଗତି ନାହିଁ ତ—ଚନ୍ଦ୍ର ବିନା
ଚକୋର ପରି । ନିଷ୍କୃତି ନାହିଁ ସେ କୃଷ୍ଣରୁ ।
ଛଡ଼ାଇଲେ ସେ ଛାଡ଼ିବ ନାହିଁ । ନାଗ-ଚୂଡ଼ା
ଦଶା ହୋଇଯିବ ।

ସେ ପ୍ରୀତିର ସେତିକି ସ୍ୱୀକୃତି—ସେଇ ପୁଣ ଅପକୀର୍ତ୍ତି ।

ତାକୁ ରଖିବା ଯେତିକି କଷ୍ଟ—ଛାଡ଼ିବା ତତୋଽଧିକ ।

ତମେ ବୁଝିପାରୁ ନା ? ତେବେ ଶୁଣ ! ଯେତେବେଳେ
ଦେଖିବ, ତମ ଭଲ-ପାଇବା ପ୍ରତୀକରୁ ଯାଇଁ କେବଳ
ପ୍ରତ୍ୟୟରେ ରହିଗଲଣି, ରୂପ ଆଉ ବେଶକୁ ଭୁଲି
ଯେତେବେଳେ ରସରେ ପ୍ରବେଶ କଲଣି—ରସରେ
ଆବେଶ ଆସିଲଣି, ନାମର ରୁଚି ଛାଡ଼ି ଖାଲି ନାଦର
ସ୍ୱାଦରେ ସବୁ ସୂଚିତ ହେଲଣି, ଦେହ ନାହିଁ—ଅଥଚ
ଦାହ ଅଛି, ମନ ନାହିଁ—ସେ ଗହନରେ ମନ୍ମଥ ଜାଗି
ବସିଛି, ସେତେବେଳେ ତମେ ବଳେବଳେ
ବୁଝିପାରିବ ଯେ—

ଦୟିତ ନାହିଁ—ମାତ୍ର ଦୟା ଅଛି, ମୁଁ ନାହିଁ—ଯାହା
ଅଛି ସେ କେବଳ ମୋର ମୋହ ।

ସେ ପ୍ରେମ—ତମର ସେଭଳି ଭଲ ପାଇବାକୁ କ'ଣ
କହନ୍ତି ଜାଣ ?—ଅପାର୍ଥିବ-ଅପ୍ରାକୃତ-ଅବିନଶ୍ୱର ।

ବିଶ୍ୱାସ ହେଉ ନାହିଁ ? ତମେ ନିଜକୁ ପଚାରିଲ ।
ପ୍ରଶ୍ନର ବ୍ୟୂହ—କଣ ଉତ୍ତର ପାଇବ ? ତମେ ଯାହାକୁ
ଭଲ ପାଉଛ, ସେ କଣ ମୁଁ ?—ଏଇ ଅଙ୍ଗଂ ଗଳିତଂ
ପଳିତଂ ମୁଣ୍ଡଂ—ଦନ୍ତବିହୀନଂ ଜାତଂ ତୁଣ୍ଡଂ-ବିଶିଷ୍ଟ
ଅଶିଷ୍ଟ ମଣିଷଟିକୁ କଣ ତମେ ଭଲ ପାଉଚ ?
ସତ କହିଲ !

ଆଚ୍ଛା, ତା' ଯଦି ହେଉଥାଏ, ତେବେ ଯେଉଁ ଦିନ
ଏଇ ସାତ ଗୃହସ୍ତ୍ରର କାଠବକଟକ ପାଇଁ ଛ'ଖଣ୍ଡି
କାଠର ଲୋଡ଼ା ପଡ଼ିବ, ସେ ଦିନ ତମେ କଣ
ଶୁଣିଆ ଡାକ କାନ୍ଥ ବୃଶପାଖରେ ଲୁହାକଣ୍ଟା ବାଡ଼େଇ
ଦେହ କଙ୍କାଳ ଘରଘରଣୀ ହେଇ ବସିବ—ପୂସ୍କର
ଦୋଷ ଛଡ଼େଇବାକୁ ବ୍ରାହ୍ମଣ ହାତରେ ଘିଅ ପୋଡ଼ ?
ପାରିବ ନାହିଁ—ପାରିବ ନାହିଁ ତମେ ।

ମୋର ଭୂଲଟାଇ ତମର ଭବିଷ୍ୟତ ହେଇ ଠିଆ
ହେବ—ତମକୁ ଅଭିଭୂତ କରି ।

ମୋର ପ୍ରେତ ହିଁ ମନେ ହେବ ତମର
ଏକାନ୍ତ ଅଭିପ୍ରେତ—କାଳକାଳକୁ ।

ବୋଧହୁଏ ବର୍ତ୍ତମାନ ତମେ ନିଜକୁ ପଚାରିବା ଆରମ୍ଭ
କରିସାରିବଣି—ଏ ଦୁର୍ଗମ ଗହନ ପଥ ବାଛିନେଲି
କାହିଁକି ଜୀବନରେ ଶପଥ କଲପରି ? ମନ ବଳଲି
କାହିଁକି ଏ ନଚ୍ଛୁଡ଼ଲ ଆସମାନୀ ରଙ୍ଗରେ ଝଲହେବା
ପାଇଁ ସଂସାରର ଅସଂଖ୍ୟ ଆକାଂକ୍ଷାକୁ ଫିଙ୍ଗି ଦେଇ ?
କାହା କୋଳରେ ଏ କାତି ହାତପାତି ନେଇ ଆସିଲି
ଛୁଞ୍ଚିକ ହୃଦୟରେ ବନ୍ଧାଇ ସାଇତି ନ ରଖୁଣୁଁ ?

ମୋର କ'ଣ ଗଲା ? ମୋର କିଛି ଯାଇନାହିଁ ?
ତମେ ପୁଣି କହୁଛ ଏ କଥା ?

ଯେଉଁଦିନୁ ମୋତେ ଭଲ ପାଇବାର ଶିଖାଇଲେ ସେଦିନ
ହେଇ ଶିଖିଲଣି, ସେ ଦିନରୁ ଆଜଯାକେ ସ୍ବନ୍ତ ସ୍ବତ
ଶେଯପାଖ ଚେଖିଲ୍ ଆଖି ତନ୍ତୁ ଯେତିକ ଚାଖିଲ୍ ଲୁହ
ଗଡ଼ାଇଛ—ଜନ୍ମପାଶ୍ୱ ସେ କେତେ ? ପଞ୍ଜର
ଭେଦକରି ଯେତେ ସକାଳ-ସଞ୍ଜର ବୃକ୍ଷଫଟା
ହା-ହୁତାଶ ଉଡ଼ିଯାଇଛି ଝଡ଼ର ଝାଞ୍ଜି ଦେହରେ
କଳଲଣି କେବେ ତାକୁ ?

ଯାହା ଯାଇଛି—ସେସବୁ କଣ ଏକା ତମର—
ମୋର କଛି ନାହିଁ ?

ତମେ ବଦ୍ୟୁତର ଦ୍ୟୁତିକ ଧରିଛ—ସେ ଧୃତି କା'ର ?
ବରଜ ବଜାରରେ ଅପବାଦର ବାଜା ବଜିଥିବେଳେ
କାନଡ଼େରି ଶୁଣିବାର ଯେଉଁ ଗତି,
ସେ ଗତି କାହାର ?

ସୂର୍ଯ୍ୟକାନ୍ତ ମଣି ଆଣି ଗଳାହାର କରି ଜଳପୋଡ଼
ଟେକ ଧରିଛ ଯେ ଗୁଣିକ—ସେ ଗୁଣ କଏ ଦେଲା ?
'କଣ୍ଟିତ କାନ୍ତା ବରହଗୁରୁଣା ସ୍ୱାଧିକାର ପ୍ରମତ୍ତ'
କବି-ନାୟିକାର ଅପଯାଣ୍ଡ କଳଙ୍କ ଘେନ,
'ଗୃହ୍ଣ ହେମମୟ ସୁନ୍ଦର ପ୍ରେମ'ର ଭିଖାରି କବିର
ପ୍ରେମିକା ହେବାର ଅପଖ୍ୟାତି ପାଇ ମଧ୍ୟ ତମେ ଯେଉଁ
ଅବିଚଳ ମତି, ଅଚଞ୍ଚଳ ଗତି ପାଇଚ—ସେ
ସଦ୍‌ଗତିର ସାଥୀ କଏ ?

ମୁଁ କହୁନାହିଁ । ପଚାର ତମେ ତମ ପ୍ରିୟ
କବିର ପାଠକବର୍ଗଙ୍କୁ ।

କବିପ୍ରିୟା କଣ ସ୍ୱକୀୟା ନୁହେଁ—ପରକୀୟା ? ବଧୂ,
ନୁହେ—ବେଶ୍ୟା ? ଭାମିନୀ ନୁହେ—କାମିନୀ ?
କବି କଣ ତେବେ ଶକ୍ତ ନୁହେ—ଆସକ୍ତ ? ପତି ନୁହେ
—ଉପପତି ? ବର ନୁହେ—ସ୍ଥାବର ?

ମୁଁ ତାର ଉତ୍ତର ଦେଇପାରିବି ନାହିଁ; କିନ୍ତୁ ମୁଁ କଣ
ଜାଣିଛୁ ଜାଣ ? କବିର କୃତିତ୍ୱ ଚିରଦିନ ଆଣି
ଦେଇଛୁ ଅବାଞ୍ଛିତ ବିକୃତ କବିପ୍ରିୟାର ଜୀବନୀରେ ।

କବି କିନ୍ତୁ ଉଠିଯାଇଛି ଆପଣାର ସମସ୍ତ ସୁକୃତ
ଦୁଷ୍କୃତିର ଉପରକୁ । ରହିଯାଇଛି କେବଳ ତାର
କୃତିର କୀର୍ତ୍ତି—ଲୋକ କୀର୍ତ୍ତନରେ ନୁହେ—ଜନ ସ୍ମୃତିରେ
ସଂସ୍କୃତିରେ ।

କାଳିଦାସ ଆଜି ଲକ୍ଷହୀରା—ଚଣ୍ଡିଦାସ ଓ ରଜକିନୀ !

ନା-ନା—ସେ ଦୁର୍ଭାଗ୍ୟ ମୁଁ କଦାପି ଆଣି ଦେଇପାରିବି
ନାହିଁ ତମ ଜୀବନରେ । ନା-ନା ଅସମ୍ଭବ ! ବରଂ
ତମେ ମୋତେ ଭଲ ନ ପାଅ—ବରଂ
ତମେ ଭୁଲିଯାଅ—
ଭୁଲିଯିବା ଭଲ ଏ ଏକ ଆକସ୍ମିକ ଦୁର୍ଘଟଣାକୁ ।
ମୁଁ ଖୁସି ହେବି—ସୁଖୀ ହେବି ସେଥିରେ ।

କାରଣ ମୁଁ ଯାହାକୁ ଭଲ ପାଇଛି ତାକୁ କେବେ
ବେଶ୍ୟା ବୋଲାଇବାର ଅଭିଶାପ ଆଣି ଦେଇପାରିବି
ନାହିଁ—ଆଜି କୌଣସି ବେଶ୍ୟାକୁ ମଧ୍ୟ ମୁଁ ଭଲ
ପାଇପାରି ନାହିଁ ଜୀବନରେ ।

ତମେ ଚାଲିଯାଅ—ଚାଲିଯାଅ—ଦୂରକୁ—ବହୁ ଦୂରକୁ।
ମୋ କଳ୍ପନାର ସୀମାରେଖା ପାରି ହୋଇ ଲୋକ-
ଲୋଚନର ଅନ୍ତରାଳକୁ—ନିନ୍ଦା ଅପବାଦ-
ବାଇଦ ଅଭେଦ୍ୟ ମେଘନାଦ ପାଚେରି ସେ ପଟକୁ—

ଚାଲିଯାଅ—ଚାଲିଯାଅ ତମେ !

ମୁଁ ଦୁଃଖ କରିବି ନାହିଁ । କେତେ ଦୂରେ ଚନ୍ଦ୍ର
କେତେ ଦୂରେ କୁମୁଦିନୀ !

ତମ କରପଲ୍ଲବର ପେଲବ ସ୍ପର୍ଶ ନ ଥାଉ—ମୁଁ କିନ୍ତୁ
ଆପଣାର ଦୈନ୍ୟରେ ଆକର୍ଷଣ କରି ଆଣିବି ତମର
ସେଇ କାରୁଣ୍ୟାମୃତ ଧାରା, ନବଘନ ଘନବନାନୀର
ଅବନତ ଶ୍ୟାମଳିମା ପରି ।

ତମ ଅନାଘ୍ରାତ ଅଙ୍ଗ ସୌଷ୍ଠବର ସୁଗନ୍ଧ ମୋର ନାସା-
ରନ୍ଧ୍ରରେ ଆଉ ପ୍ରବେଶ କରିବ ନାହିଁ, ମୁଁ ଜାଣେ—
ତଥାପି ତମର ତାରୁଣ୍ୟାମୃତଧାରାର ଆସବ
ଆମେଜରେ ମୋର ବ୍ୟାଧିଗ୍ରସ୍ତ ଏ ବାର୍ଦ୍ଧକ୍ୟ ନିତି-ନିତି
ନବଯୌବନର ସ୍ୱପ୍ନ ଦେଖୁଥିବ ।

ତମର ସେଇ ନିଷ୍କଳଙ୍କ ମୁଖଚନ୍ଦ୍ରମାର ପୀୟୂଷବୋଳା
ଓଷ୍ଠାଧର-ସୁଧାପାନର ସୁଯୋଗ ଏ ଜୀବନରେ ଆଉ
ନ ମିଳିଲେ ମଧ୍ୟ ତମର ଲାବଣ୍ୟାମୃତଧାରାରେ
ଅବଗାହନ କରି ମୁଁ ଅମୃତର ଅଧିକାରୀ ହୋଇ
ପାରିବି ।

ମୋର ସମସ୍ତ ସୃଷ୍ଟିକି ବର୍ଣ୍ଣାଢ଼୍ୟ କରିଛି ତମର
ଲାବଣ୍ୟ—ସେ ଆଉ ଛାଡ଼ିଯିବାର ନୁହେ ।

ମୋର କଣ୍ଠରେ ଶବ୍ଦ କେତେ ନୂତନ ଅର୍ଥବୋଧ,
ମୂଲ୍ୟବୋଧ ଆଣି ଦେଇଥାଏ, ସେ ତମର ଏଇ ତରୁଣ
ତନିମା—ତନୁର ତରଳ ତରୁଣିମା—ସେ ଆଉ
ପଳେଇଯିବାର ନୁହେ ।

ମୋର ପ୍ରତ୍ୟେକ ନିରଣି ତମର କରୁଣାବଳରେ ହିଁ
ପ୍ରେରିତ ହୋଇ ଆସିଛି ଆଜଯାକେ—ଆସୁଥିବ ମଧ୍ୟ—
ତାକୁ କିଏ କଣ କାଢ଼ି ନେଇ ପାରିବ ?

ମୁଁ ବାସ୍ତବରେ କବି ନ ଥିଲି । ତମରି ଆକାଂକ୍ଷାର
ମୋତେ ସେ ଆଖ୍ୟା ଦେଇଛି । ତମରି ଉଦ୍‌ବୋଧନରେ ହିଁ

'ମୋତେ ଦେଇଛୁ ରସକାବ୍ୟର ନାନା ସ୍ୱାଦ-ବିସ୍ୱାଦ ।
ତୁମରି ଆଶ୍ରୟହିଁ ମୋତେ ଦେଇଛି କବି ହେବାର
ପ୍ରଶ୍ରୟ ଆଜି କାବ୍ୟ-କବିତାର ଆଶ୍ରୟ ।

ତମେ ଯାଇ ମଧ୍ୟ ଚିରଦିନ ରହିଥିବ ମୋ ପାଖରେ—
ଆଖପାଖରେ ।

କାରଣ ତମେ ଖାଲି ବିରାଟ କଳ୍ପନା ନୁହଁ; କେବଳ
ବିରାଟ ବାସ୍ତବ ମଧ୍ୟ ନୁହଁ—ତମେ ଉଭୟର ସନ୍ଧି ଓ
ସମାସ ।

କଳ୍ପନା ମୋର ଉପପତ୍ତି—କାବ୍ୟ ମୋର ସମ୍ପତ୍ତି—
ତମେ ମୋର ଚରମ ନିଷ୍ପତ୍ତି ।

ବାସ୍ତବରେ କାବ୍ୟର ସମାଧି । କଳ୍ପନାରେ କବିର ।
ଏ ଉଭୟବିଧ ବିପତ୍ତିରେ ଏକମାତ୍ର ରକ୍ଷାକବଚ
ତମେ ବରାଭୟଦାୟିନୀ ଆଧାରଭୂତା ଶକ୍ତି-
କୁଳକୁଣ୍ଡଳିନୀ ।

କବି ସାଧକ—କବିପ୍ରିୟା ସାଧନା—କାବ୍ୟ ତାର ସିଦ୍ଧି ।

ସାଧକ ପର୍ଯ୍ୟାପ୍ତ—ସିଦ୍ଧି ଅପର୍ଯ୍ୟାପ୍ତ—ସାଧନା ହିଁ
ବାସ୍ତବରେ ଆପ୍ତ ।

ମୁଁ ଧ୍ୟାନସ୍ଥ ହୋଇ ଦେଖେଁ ତମର ସେଇ ଅଭ୍ରବର୍ଣ୍ଣୀୟ
ଭବମୂର୍ତ୍ତି—ଆଲୋକ ଓ ଅନ୍ଧାରର ସନ୍ଧିପାତରେ ।
କେଳିକଦମ୍ବ ଲତାର ଶ୍ୟାମଳଛାରେ—ସହସ୍ର-ଶାଖ
କଳ୍ପତରୁର ଅସଂଖ୍ୟ ସଂକଳ୍ପରେ ।

ମୁଁ ଯେତେବେଳେ ତିଳ ତିଳ ହୋଇ ଜଳଯାଏଁ, ତମେ
ସେତେବେଳେ ସେଇ ଜ୍ୱଳନର ସୁବାସ ଘେନି
ଆମୋଦିତ କରିଦିଅ ସମଗ୍ର ଆବାସ ।

କବି ଧୂପ । ଗନ୍ଧ ତାର କାବ୍ୟ । ଆଜ ଧୂମ ହେଉଛି
ତମେ—ସେଇ ଧୂପର—ସେଇ ଗନ୍ଧର—
ସେ ଆବାସର ।

କବି ଯଦି ଶଶାଙ୍କ ହୁଏ—କଳଙ୍କ-ଅଙ୍କିତ-ଅଙ୍କ
ଅଭ୍ରଙ୍କଷ ଶୁଭ୍ର ଚନ୍ଦ୍ରମା ହୁଏ—କାବ୍ୟ ସେହି ନିର୍ମଳ
ଚନ୍ଦ୍ରର ବିମଳ ଚନ୍ଦ୍ରିକା—ଆଜ ତମେଇ ହେଉଛ
କବିପ୍ରିୟା—ଶଶାଙ୍କର କଳଙ୍କ—ସକଳ ସୌନ୍ଦର୍ଯ୍ୟ ଓ
ମାଧୁର୍ଯ୍ୟର ଆଧାର—ଦାଢ଼ୁଲୀ ଶ୍ରୀରାଧା । •

କିନ୍ତୁ ଏ କବି ଅପବାଦିନୀ ହେବାରେ ତମେ କଣ
ସବୁବେଳେ ବିଚଳିତ ହେଇଛ—ବିଗଳିତ ହେଇନାହଁ
କେବେ ? ବିଷାଦରେ ବିମର୍ଷ ଦେଖାଇଛ ସର୍ବଦା—
ହର୍ଷ ଆନନ୍ଦରେ ଉତ୍‌ଫୁଲ୍ଲ ହେଇନାହଁ ଥରେହେଲେ ?

ଗୋପାଙ୍ଗନା—କୃଷ୍ଣବିରହିଣୀ କୃଷ୍ଣକଳଙ୍କିନୀ କୁଳଟା
ଆଭୀରଲଲନା କେବେହେଲେ କୃଷ୍ଣଅପବାଦଲାଞ୍ଛିତା,
ଅସ୍ତବ୍ୟସ୍ତ ଅପବାଦଭୂଷଣ-ଭୂଷିତା ହେଇ ନାହାନ୍ତି—
"ଶ୍ୟାମ ଅପବାଦ ମୋତେ ଲାଗିଥାଉ ଗୋ କୃଷ୍ଣ
ଅପବାଦ ମୋତେ··· ?" କହି ।

ଶଠ ଲମ୍ପଟଶିରୋମଣି ଶ୍ରୀକୃଷ୍ଣ କଣ୍ଢେଇ ଆସିଲେ
ନାହିଁ ସଂକେତ ସ୍ଥଳକୁ—ଯମୁନାତଟ ବଂଶୀବଟ
ନିକଟକୁ । ତଥାପି ତଥାପି କଣ କେହି ପ୍ରୋଷିତ-
ଭର୍ତ୍ତୃକା କଣ ଗାଇ ନାହିଁ—
"ଯଥା ତଥା ବା ବିଦଧାତୁ ଲମ୍ପଟୋ ମତ୍
ପ୍ରାଣନାଥସ୍ତୁ ସ ଏବ ନାପରଃ ।"
କବି-ପ୍ରିୟା ହେବାର ଗୌରବଠାରୁ କବି-କଳଙ୍କିନୀ
କାବ୍ୟ-ଅପବାଦିନୀ ହେବାରେ ଗର୍ବ ଯେପରି ଅଧିକ
ଶ୍ଳାଘ୍ୟ । ମୋର କାହିଁକି ମନେହୁଏ ଏମିତି ।
ସତ ନୁହେଁ ?

ସେହି କଳଙ୍କିନୀ କଳଙ୍କଭଞ୍ଜିନୀ ମୂର୍ତ୍ତି ହିଁ
କବିପ୍ରିୟାର ଆନନ୍ଦମୟ ପ୍ରକାଶ ।
କବି ସତ୍ୟ । ପ୍ରିୟା ତାର ଚୈତ୍ୟ ମୂର୍ତ୍ତି । ଆଉ
କାବ୍ୟହିଁ ତାର ହ୍ଲାଦିନୀ 'ଶକ୍ତି' ।
କବି ଜ୍ଞାନ—କାବ୍ୟ ତାର କର୍ମ—ପ୍ରିୟା ହିଁ ଉଭୟର
ପ୍ରେରକ ବସ୍ତୁ ଭକ୍ତି ।
କବିକୃଷ୍ଣ—କଳାକାର । କାବ୍ୟକଳା—ବଂଶୀସ୍ୱନ ।
କବିପ୍ରିୟା ହିଁ ପ୍ରକୃତପକ୍ଷେ କଳାବନ୍ତୀ ଗୋପବାଳା ।

କବି-ପ୍ରିୟା ତେଣୁ ସର୍ବଗୁଣାଧାର, ଗୁଣୈରଷ୍ଟଭିର୍ଯୁକ୍ତା
ମହାଭାବପ୍ରଭାବିନୀ ମହୀୟସୀ ମହିଳା ।
କଳାବନ୍ତୀ-କଳାନିପୁଣା-କଳାସମର୍ଥା-କଳାସ୍ୱରୂପିକା
କବି ଓ କାବ୍ୟର ଅଭିନ୍ନ ଅଂଶ ।
କବି, କବିତା, କବି-ପ୍ରିୟା ଏକ—ଅଭିନ୍ନ – ଅଭେଦ୍ୟ

କବି କାଳିଦାସ ଦୁଷ୍ମନ୍ତ ନୁହନ୍ତି—କାଳିଦାସର ପ୍ରିୟା
କୁଳଟା ବେଶ୍ୟା ହୋଇ ନ ପାରେ । କବି-
ମାନସସୁନ୍ଦରୀ, କଳ୍ପ ଦେଶ ଆବେଷ୍ଟିନୀ, କଳ୍ପବର୍ଣ୍ଣ-
ଶୋଭାଢ଼୍ୟା କବିକାନ୍ତା ସେ ।
କବି କଳ୍ପନାର ନାନା ଛନ୍ଦରେ ନିଜକୁ ଛନ୍ଦାୟିତ
କରି ସେ ନବ ନବ ପ୍ରସାଧନ-ଚତୁଷ୍ପଥ, ଅଶେଷ
ବେଶଭୂଷଣା, ନାନା ଭାବବିଭାବନୀ, ଭାବବିହ୍ୱଳିନୀ
ହୋଇ ରହିଥାଏ ବୋଲି ଅରସିକ ଭାବ-ଦରିଦ୍ର
ମୂର୍ଖରେ ତାର ଅଯଥା ଅକାରଣ ନିନ୍ଦା—ଅପନିନ୍ଦା ।

କବି ଚଣ୍ଡୀଦାସର ପ୍ରେମ-ସୋହାଗିନୀ, କବି
ପ୍ରେରଣାର ଉତ୍ସ କବିପ୍ରାଣା କବି-ପ୍ରିୟା କୌଣସି
ନୀଚକୁଳଜାତା ରଜକିନୀ ନାରୀ ନୁହେଁ; ସେ ଯେ
କବିଙ୍ଗନର ସଙ୍ଗୀ—କଳ୍ପଷହାରିଣୀ—ସଜନୀ !

ସେ ପରପ୍ରିୟା ନୁହନ୍ତି । ମର ମର୍ତ୍ତ୍ୟର ପର,
ପରମପ୍ରେମର ପ୍ରେରୟିତ୍ରୀ ପରକୀୟା ।

ଅଧିଭୂତ, ଅଧିଦୈବର ଅତୀତ ଆଧ୍ୟାତ୍ମିକା—
ଅପ୍ରାକୃତ ପ୍ରେମର ପ୍ରତିମୂର୍ତ୍ତି ।

କାବ୍ୟ-ନାୟିକା ତେଣୁ କେବଳ ଉତ୍ତମା ନୁହେଁ—
ଅସମୋର୍ଦ୍ଧ ମଧୁମିତା ।

ପଙ୍କରୁ ଜାତ ହୋଇଥିଲେ ମଧ୍ୟ ସେ ପଙ୍କଜମା; ତବ
ତା'ର ବନ୍ଧୁ—ମିତ୍ର, ରବି, ଅଂଶୁମାନ୍ ସୂର୍ଯ୍ୟ ।

ବିଭାବରୀ ପ୍ରଭାତରେ ଯେତେବେଳେ ପ୍ରସ୍ଫୁଟିତ
ଶତଦଳ ଶୀତଳ ପବନହିଲ୍ଲୋଳରେ ଟଳଟଳ
ହୋଇ ଝଲଉଠୁଥାଏ ଉଦୀୟମାନ ତରୁଣ ଅରୁଣର
କିରଣଜାଲରେ, କହିପାରିବ ନାହିଁ, ସେତେବେଳେ
କିଏ କାହାର ଚରଣତଳେ ପ୍ରେମ ନିବେଦନ
କରେ ସର୍ବାଗ୍ରେ । ମୃଣାଳିନୀର ଭୁଜବଲ୍ଲୀ ଅବନତ
ହୋଇଯାଏ ସୂର୍ଯ୍ୟୋଦୟ ସ୍ୱାଗତ ମୁଦ୍ରାରେ କିମ୍ବା
କମଳିନୀର ହସହସ ମୁଖମଣ୍ଡଳର ଆକର୍ଷଣରେ କର
ପ୍ରସାରଣ କରି ବିଅନ୍ତି ମରୀଚିମାଳୀ ଈଶ୍ୱର ?

ତମେ ଯେତେବେଳେ ମୋର ପାଦ ସ୍ପର୍ଶକରି ଆତ୍ମହରା
ହୋଇ ଧରି ବିମଣ୍ଡନ କର ଯେତେବେଳେ ମୋର କଣ
ମନେ ହୁଏ ଜାଣ ? ମନହୁଏ, ପ୍ରତିଶୋଧ ନେବାକୁ
ଆପ୍ତବାକ୍ୟ ପ୍ରୟୋଗ କରି—
"ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବମୁଦାରମ୍ ।"

ତମର ଆଶ୍ଳେଷ ହିଁ ମୋର ବିଶେଷଣ—ତମର
ଅଭିମାନହିଁ ମୋର ବିଭୂଷଣ ।

ତୁମୋର ସଂବେଦନରେ ମୁଁ ଅନୁଭବ କରେଁ
ତମର ଜାଡ୍ୟ—ଆଉ ସଂବୋଧନରେ ତମର ବ୍ରୀଡ଼ା !

ତମେ ନିକଟରେ ଥିଲେ ମୋର ଭାବର ସମ୍ପଦ—
ଦୂରକୁ ଚାଲିଗଲେ ସଂପ୍ରଦାନ ।
କେତେବେଳେ ମୁଁ ଚକୋର, ତମେ ଚନ୍ଦ୍ରିକା—
ପୁଣି କେତେବେଳେ ମୁଁ ଚନ୍ଦ୍ର, ତମେ କୁମୁଦିନୀ ।
ତମ ସଙ୍ଗରେ ମୁଁ ଯମକ; ପ୍ରସଙ୍ଗରେ ମୁଁ ଯତି ।
ଏଥର କହିଲ—ମୁଁ ତମକୁ ଚିହ୍ନିଛି କି ନାହିଁ !
ମୋ କାବ୍ୟର ଆବୃତ୍ତିରେ ତମେ ଛନ୍ଦ—ନବୃତ୍ତିରେ
ତମେ ସୁମନ୍ଦସ୍ମିତା ।

କିନ୍ତୁ ହାଁ—ତମେ କଣ ମୋତେ ଚିହ୍ନି ପାରିଲ ?
ଚେଷ୍ଟା କଲ—କେବେ କେବେ ଚିହ୍ନିବାକୁ ?
ମୋତେ ଖୋଜିଁ—ଖୋଜିଲ—ହୋଇଛି ମୁଁ ହଜିଯାଇଛି ।
ଏଥର ଆପଣାକୁ ଖୋଜିଁଲ—ତମ ଦେହରେ ଯେଉଁ
ରୋମାଞ୍ଚ ମୁଁ ସେଇ ।
ଆଜି-ଆଜି—ସଂଦେହରେ ମୁଁ କେବଳ ଏକ ଜ୍ୱାଳା ।

ମୋତେ ତମେ ସନ୍ଦେହ କର ନାହିଁ—
ମୁଁ ଏକାନ୍ତରେ ତମର ।
ତମ କପାଳରେ, କପୋଳର ଯେତେବେଳେ
ବିନ୍ଦୁ ବିନ୍ଦୁ ସ୍ୱେଦବାରି ଚନ୍ଦନପାଟିର ପରିପାଟୀ
ଦେଖି ନ ପାରି ଶୁଖି ଶୁଖି ମରୁଥାଏ, ସେତେବେଳେ
କହିବ କିଏ ସେ ତମର ଖେଳଲୋଳ ଖଞ୍ଜନାକ୍ଷ ପରେ
ଭ୍ରୂଲତା ଭୁଜଙ୍ଗ ଖେଳାଇ ମଜା କରୁଥାଏ ବସି ?

ଯେତେବେଳେ ନବଘନ ଦେଖି କେକୀ ପୁଚ୍ଛ ପ୍ରକମ୍ପନ
କଲାପରି ତମ ଅଙ୍ଗଘନରେ ପୁଲକର ଢେଉ
ଖେଳି ଖେଳି ଯାଉଥାଏ, ପ୍ରତି ଲୋମକୂପରେ ମୃଦୁ ମୃଦୁ
ସିହରଣ ଜଗାଇ, ସେତେବେଳେ ତମର ଭଙ୍ଗୀ-ଭଙ୍ଗି

ସ୍ପନ୍ଦନର ତାଳେ ତାଳେ ଲୀଳାୟିତ କରୁଥାଏ କିଏ
ବସି ଅଷ୍ଟସାତ୍ତ୍ୱିକ ବିକାରରେ ଗୋଟିକ ପରେ
ଗୋଟିଏ ସାରା ଶରୀରକୁ ଭାବଭୂଷଣରେ ବିଭୂଷିତ
କରି—ଜାଣିନାହିଁ ତାକୁ ?

ଯେତେବେଳେ ନୟନର କଜଳ ଆସି ବୟାନରେ
ନେସିହୋଇ ମିଶି ମିଶି ଯାଏ, ନିଷ୍କମ୍ପ ନିର୍ବେଦ
ହସ୍ତପଦ—ବିବର୍ଣ୍ଣ ମୁଖାରବିନ୍ଦ, ସେତେବେଳେ
ନିଜର ସ୍ୱରକୁ ନିଜଠାରେ ଅପରିଚିତ କରିବା
ଉଦ୍ଦେଶ୍ୟରେ କିଏସେ ତମ ସ୍ୱର ସହିତ ସ୍ୱର ମିଳାଇ
ମଳୟର ନିଳୟାଭିମୁଖରେ ପଳାୟନ କରେ—
ଚିହ୍ନିନାହିଁ ତାକୁ ?

ତମେ କେବେ ନିଜର ପରିଚୟ ନିଜକୁ ପଚାରିନାହଁ ?
ନିଜର ଠିକଣା ନିଜେ ଖୋଜି ଥକିପଡ଼ି
ଅଣନିଶ୍ୱାସୀ ହୋଇ ନାହଁ ? ଗତିଶୀଳ ଚନ୍ଦ୍ର ସୂର୍ଯ୍ୟ
ତମ ଆଖିକି କେବେ ଅଚଳ ସ୍ଥାଣୁ ଦେଖାଯାଇ
ନାହାନ୍ତି ଯେକୌଣସି ଅବସ୍ଥାରେ ? ତମେ କେବେ
ପହଁରି ଭୁଲି ଗୋଟାଏ ଅଗାଧ ସମୁଦ୍ରରେ ବୁଡ଼ି ବୁଡ଼ି
ଯାଉଥିବାର ହାଲୁକା ଅନୁଭୂତି ପାଇନାହଁ ?
ସେଇ ରସାର୍ଣ୍ଣବର ଲୟ, ବିଲୟ ଓ ପ୍ରଳୟରେ ଯେଉଁ
ଅଦୃଶ୍ୟ ଇଙ୍ଗିତ ଓ ଇସାରା, ସେ କିଏ ?
ସେ କଣ ମୁଁ ନୁହେଁ ?

ଆଜି ତମେ ଦର୍ପଣରେ ନିଜ ରୂପକୁ ଖୋଜି ଲଭ ନାହିଁ ।
ତମର ଚିତ୍ତ-ଦର୍ପଣକୁ ପରିମାଜି ଦେଖିଲ—କାହାର
ଛବି ଅର୍ପିତ ?
ହେ ତମେ ନୁହଁ—ମୁଁ । ଆଜି ମୋ'ର ଭିତରେ ତମର
ପରିଚୟ ।

ନିଜର ରୂପମାଧୁରୀର ଆସ୍ୱାଦନ ପାଇଁ ଯେତେବେଳେ
ଲୋଭ ବଢ଼େ—ସେ ମାଧୁରୀ ତମର ନୁହେଁ, ମୋର ।
କାରଣ ସେ ମାଧୁରୀର ଆସ୍ୱାଦନ ଅସମ୍ଭବ । ସମ୍ଭବ
ହେଲେ ଲୋଭ ଆଉ ବଢ଼ନ୍ତା ନାହିଁ । ସେ ଲୋଭ ଯେ
କେବଳ ବଢ଼ି ବଢ଼ି ଚାଲେ—ସେ ଆଉ ଛାଡ଼ିବାର
ନୁହେଁ ।

ଦେଖି ମଧ୍ୟ ଦେଖିବାକୁ ବାକି ରହିଗଲା ପରି—ଚିହ୍ନି ମଧ୍ୟ
ଅଚିହ୍ନା ପରି ଲାଗେ ଯେଉଁଠି, ସେଇଠି ମୋର ଚିହ୍ନା—
ସେଇଟି ମୋର ମୁଦ୍ରା ।
ଯେତିକି ଚିହ୍ନା ସେତିକି ଇଷ୍ଟ—ଯାହା ଅଚିହ୍ନା ତାହା
ଅଧିକ ସ୍ୱାଦିଷ୍ଟ ।

ଯେତିକି ଜଣା ସେତିକି ପ୍ରେୟ—ଯାହାକଠୁ ଅଜଣା
ସେସବୁ ଶ୍ରେୟ ।
ଏଥର ଚିହ୍ନିଲ ମୋତେ ?

ହଁ, ମୁଁ ତମ ପ୍ରାଣର ପ୍ରାଣ—ଆଉ ତମେ ?
ତମେ ସେଇ ପ୍ରାଣର ପୋଷକ ପ୍ରଣୟ ।
ମୁଁ ତମର କାନ୍ତ—ତମେ ମୋର କାନ୍ତି ।
ମୁଁ ତମର ସ୍ୱସ୍ତିକ—ତମେ ମୋର ଶାନ୍ତି ।

# କବିତା

ସେ ଆଶଙ୍କା ତମର ଆଦୌ ଠିକ୍ ନୁହେଁ । ଭୁଲ୍ ।
ବିଲ୍‌କୁଲ୍ ଭୁଲ୍ !
କିଏ କହିଲା, ମୁଁ ତମକୁ ଭଲ ପାଏ ନାହିଁ ବୋଲି ?
ମୁଁ ତମକୁ ସତରେ ଭଲ ପାଏଁ—ଖୁବ୍ ଭଲ ପାଏଁ ।

କିନ୍ତୁ···
କିନ୍ତୁ-କିନ୍ତୁ—ମୁଁ ···
ହଁ, ଆଉ ଜଣକୁ ବି ଭଲ ପାଏ । କହିବ ସେ କିଏ ?
କେମିତି କହିବ ? ତାର ପରିଚୟ କଣ ଦେଇ
ହେବ ?
ସେ···ସେ··· !
ସେ ତ ଗୋଟିଏ ନୁହେଁ—କୋଟିଏ । ଏକ ନୁହେଁ
ଅନେକ । ପରିଚୟ ଦେବି କପରି ?
ଶବ୍ଦରେ ତାର ଭାବ । ସ୍ପର୍ଶରେ ତାର ଭୂତି—ବିଭୂତି ।
ରୂପରେ ତାର ଆବେଗ । ରସରେ ତାର ରସ ।
ଆଉ ଗନ୍ଧ ?
ଗନ୍ଧରେ ହିଁ ତାର ବ୍ୟାପ୍ତି—ପ୍ରଶସ୍ତି ।
ଚିହ୍ନି ପାରିଲ କିଏ ସେ ?
ତାର ଦେହ ନାହିଁ, ସେ ବିଦେହ—ସୀମାହୀନ,
ନିଃସୀମ ।
ସେ ସରେ ନାହିଁ—କେବଳ ପ୍ରସରେ—ଚିରନ୍ତନ
ଅସରନ୍ତି ।
ଅବ୍ୟୟ, ଅକ୍ଷୟ, ଅନନ୍ତ !

ମୁଁ, ମୁଁ ତାକୁ ପରିହରି ନାହିଁ । ନ ପରିହରି କହିବ
କିମିତି ?

ପଶ୍ଚର ନାହିଁ—କାରଣ ପଶ୍ଚରିବାକୁ ସାହସ
ହୁଏ ନାହିଁ । ପଚ୍ଚାରିବା ଦରକାର କଣ ?
ମୁଁ ତ ଜାଣେ—ମୁଁ ତାକୁ ସୁଖ ପାଏଁ ବୋଲି—
ସେତିକି ଯଥେଷ୍ଟ ।

କେମିତି ସୁଖ ପାଏଁ—କେମିତିକା ସୁଖ ଲାଗେ, ଏତେ
କଥା ମୁଁ ଭାବିନାହିଁ କେବେ । ତାକୁ ମୋତେ ଭଲ
ଲାଗେ । ଏତିକି ଦେଖି

ହଁ, ତା ରୂପ, ତା ଲାବଣ୍ୟ, ତା କଥା, ତା'ଚାଲି ସବୁ
ଭଲ ଲାଗେ । ଭଲ ନ ଲାଗି ବାଟ କାହିଁ । ଭଲ ନ
ଲାଗିଲାପାଏଁ ମୁଁ କଣ ପୂଛୁଛି ! ପଛଁଟା ଭଲ ନ
ଲାଗେ, ମୁଁ ତାକୁ ଭଲ ଲାଗିଲା ଭଳି କରିନାଏଁ । ସେ
ଆପତ୍ତି କରେ ନାହିଁ । ଭାରି ବାଧ ।

ତାକୁ ମୁଁ କହିବ କାହିଁକି ସେ କଥା ! କହିଲେ
ଅଧିକା କଣ ହେବ ? କିଛି ନାହିଁ ।

ମୁଁ ଠିକ୍ ଜାଣେ—ମୁଁ ତାକୁ ଭଲ ପାଏଁ ବୋଲି ।
ଆପଣା ଗ୍ରନ୍ତିର ତାତିକୁ ବାଣ ।

ନା—ସେ କେବେ ଶୀତଳ ହେବାର ମୁଁ ଦେଖିନାହିଁ ।
ସେ ତାତିତ ଦହିବାରେ ଲାଗିଛି,—ନିରବଧି—ଏ
ହୃଦୟକୁ ।

ଏଥର ଚିହ୍ନିଲ ତାକୁ ?

ସେ ବ୍ୟକ୍ତି ନୁହେଁ—ଖାଲି ଏକ ଅଭିବ୍ୟକ୍ତି—ସେ
ଗୋଟାଏ ଅବ୍ୟକ୍ତର ଅଭିବ୍ୟକ୍ତି ଭଳି ।

ହଁ, ସେଇ ନିର୍ବ୍ୟକ୍ତିକ ଅଭିବ୍ୟକ୍ତିକୁ ହିଁ ଭଲପାଏ ମୁଁ
—ଶ୍ରଦ୍ଧାକରେଁ—ସ୍ନେହ ଦିଏ ।

କାରଣ, ମୁଁ ତାକୁ ବହୁ ବେଶରେ, ବହୁ ରୂପରେ,
ବହୁ ପରିବେଶରେ, ବିବିଧ ଭାବା-ବେଶରେ ଭୋଗ
କରେଁ ।

କାରଣ, ମୁଁ ଅନୁଭୂତିକୁ ପ୍ରତି ଇନ୍ଦ୍ରିୟର ରନ୍ଧ୍ରେ ରନ୍ଧ୍ରେ
ସାନ୍ଦ୍ର ନିବିଡ଼ ଭାବରେ ଯୋଗ କରିବାକୁ ଚାହେଁ
ସେ ଏକ ଇନ୍ଦ୍ରିୟାତୀତ ଅନୁଭୂତି । ସେ ତେଣୁ
ସତିଗତିର ଅନୁଭୂତି ନୁହେଁ—ସେ ମୋର ଏକ
ବିରାଟ ବିଭୂତି ।

ତା' ବୋଲି ତମକୁ ମୁଁ କମ୍ ଭଲ ପାଏ ନାହିଁ । ତଥାଚ୍
କଣ ଜାଣିଚ ? ତମ ପାଖରେ, ମୋର ମନେହୁଏ,
ଯେମିତି ମୋର ସମସ୍ତ ସ୍ନେହ, ସରାଗ, ସହାନୁଭୂତି
ଆପେ ଆପେ ଅନାଡ଼ ହୋଇପଡ଼ନ୍ତି ହୃଦୟକୁ ନିଃଶେଷ
କରି । ଜୀବନରେ ଯିଏ ମୋତେ ଯେଉଁଠି ଭଲ
ପାଇଛି, ଯେଉଁଭାବରେ ଭଲ ପାଇଛି, ଯାହାକୁ
ଯେତିକି ମୁଁ ତା' ବଦଳରେ ଦେଇଛି ବା
ଦେଇପାରିଛି ଋଣ ଶୋଧ କରି, ଯାହାବା ଦେବାକୁ
ବାକି ରହିଯାଇଛି ଦେଉଁ ଦେଉଁ, ଅଥବା ଦେଇ
ନ ପାରିଛି—ଅକ୍ଷମତାରୁ—ସେସବୁ ଭାବ ଓ ଅଭାବର
ଗୋଟିଏ ମୂର୍ତ୍ତି ପରିଗ୍ରହ ତମେ । ସେ ସମସ୍ତର ଏକ
ବିସ୍ମୟକର ସ୍ମାରକ ତମେ । ତମେଇ ବାସ୍ତବରେ
ଜୀବନରେ ମୋର ମହାର୍ଘ ଅନୁଭୂତି—ମୋର ପ୍ରକୃତି

ତେଣୁ ସେ ଏକ ହୋଇ ଅନେକ, ଆଉ ତମେ
ଅନେକ ଭିତରେ ଏକ ।

ତମ ଭିତରେ ମୁଁ କେତେବେଳେ ଦେଖିଛି କେଉଁ ଦୂର
ଅତୀତର ଏକ କାବ୍ୟ-ନାୟିକା—ଗୋଟିଏ
ନବପରିଣିତା ମୁଗ୍ଧା ବଧୂପରି ଉଗ୍ର ହୋଇଛ
ଅଭିସାରିକାର ଆଗ୍ରହ ଆନନ୍ଦ ଓ ଉଲ୍ଲାସ
ଲାଭ କରିବା ଆଶାରେ ଯେପରି ! ମୋ ସମ୍ବନ୍ଧରେ
ବିଚିତ୍ର ଧାରଣା ଘେନ, ମୋର ଅସାଧାରଣ

ଗୁଣାବଳରେ ଆକର୍ଷିତ ହୋଇ ଧୀରେ ଧୀରେ ଭସ୍ମ ଓ
ଭକ୍ତସହକାରେ ତମେ ଯେପରି ଅଗ୍ରସର ହେଉଛ,
ଜୀବନର ଯାହାକଛି ଅସୁନ୍ଦର ରହିଯାଇଛି ସବୁକୁ ସୁନ୍ଦର
କରି ସଜାଡ଼ ନେବାର ଅଭିଳାଷରେ, ମୋହର
ସଂସ୍ପର୍ଶ ଓ ସାନ୍ନିଧ ପାଇ ସତେ କ !

କେତେ କୁବ୍‌ଜାର କୁବ୍‌ଜ ଅପସାରଣ କରିଥିବ ମୋର
କରସ୍ପର୍ଶ—କେତେ ଅସଜକୁ ସଜ କରିଥିବ, ଅମାମୀକୁ
ମାନ ଦେଇ ପାରିଥିବ, ପତକୁ ନସ୍ତାର କରିଥିବ ମୋର
ସ୍ପର୍ଶ—କନ୍ତୁ ସୁନ୍ଦର କରିପାରି ନ ଥିବ ସେମାନଙ୍କର
ଏଇ ସ୍ୱାର୍ଥପର ଅଭୀପସାକୁ । ସେ ସମସ୍ତେ ସାଧାରଣ
ନାୟିକା ହୋଇ ରହିଯାଇଚନ୍ତି ଆଜଯାଏ ।

ତମେ କଣ ସେଇମାନଙ୍କ ଭିତରୁ ଜଣେ ? ନା-ନା-ମୁଁ
ତମର ସେ ରୂପ ଦେଖିଲେ, ନ ଦେଖିଲାପରି ଆଖି ବନ୍ଦ
କରିଦଏଁ ।

ଆଜ୍ଞ କେତେବେଳେ ବା ଦେଖେଁ, କେଉଁ ଏକ
ନୟନାଭିରାମା ବାମା କବ-ପ୍ରେୟସୀରୂପେ କବକୁ
ଭୁଜବନ୍ଧନରେ ଭିଡ଼ ରଖିବାର ଗୌରବ ଗରିମା ଧେନ
ଫୁଲି ଫୁଲି ଉଠୁଛି । ମୋର ସାମର୍ଥ୍ୟ ଯେପରି ପରାଜତ
ହୋଇ ପ୍ରଣୟିମାକୁ ପ୍ରଶ୍ରୟ ଦେଇଛି ଗରବଣୀ
ହେବାରେ ।

ତମେ କଣ ସତେ ତେବେ ସେଇ ସମଞ୍ଜସା ସତ୍ୟଭାମା
ଯେ ତାର ବଳାସବ୍ୟସନ ପାଇଁ, ପାରିଜାତ ହରଣର
ଆଦେଶ ଦେଇପାରେ ପ୍ରଣୟୀକୁ ?

ନା-ନା-ତମର ପ୍ରଣୟକୁ ମୁଁ ଅପମାନିତ ମର୍ଯାଦତ
ହେବାକୁ ଦେବ ନାହିଁ—ତମର ଗୌରବ ବୃଦ୍ଧି କାମ୍ୟ
ତମ ପ୍ରଣୟୀର ପ୍ରଭୁତ୍ୱ ବସ୍ତାର ଉଦ୍ଦେଶ୍ୟରେ ।

ତମ ଭିତରେ କାହିଁକି ମୁଁ ଏସବୁ ନାସ୍ତି କାଳର
ପ୍ରତିଚ୍ଛବି ଦେଖେଁ ଜାଣ ? କାରଣ ତମେ ମୋତେ
ଯେତେ ସ୍ୱରୂପରେ ସ୍ୱରୂପରେ ରୂପାୟିତ
ହୋଇ ଆପ୍ୟାୟିତ କରିଚ, ସେସବୁ ମୋତେ ଆନନ୍ଦ
ଦେଇଛି, ଉତ୍ସାହ ଦେଇଛି, ଗର୍ବ ଦେଇଛି,
ଗୌରବ ଦେଇଛି, ବେଗ ଦେଇଛି ଆବେଗ ମଧ୍ୟ
ଦେଇଛି; କିନ୍ତୁ କିନ୍ତୁ···

କେବେହେଲେ ଉଦ୍‌ବେଗ ଦେଇନାହିଁ ଜୀବନରେ ।
ସେଇ ମୋର ତମ ବିରୋଧରେ ଏକମାତ୍ର ଅଭିଯୋଗ ।

କାରଣ ତମର ଯେତେ ଯେତେ ରୂପ ମୁଁ ଦେଖିଛି—
ଯେତେ ରୂପରେ ମୁଁ ତମକୁ ପାଇଛି—ତମର ପ୍ରୀତି
ଲାଭ କରିଛି—ସେସବୁର ପ୍ରତିଦାନ ମୁଁ
ଦେଇଛି—ଦେଇ ନ ଥିଲେ ଦେଇପାରିବାର ଶକ୍ତି
ମୋର ଅଛି—ପୁଞ୍ଜି ମୋର ରହିଛି ସେ ପ୍ରଣୟର
ଋଣକୁ ପରିଶୋଧ କରିବା ପାଇଁ ।

କିନ୍ତୁ ଯେଉଁଠି ପ୍ରଣୟର ଋଣ ପରିଶୋଧ କରି ହୁଏନାହିଁ,
କରିବା ଏକାବେଳକେ ଅସମ୍ଭବ—ସେଠି-ସେଠ ?

ସେ ଏକ କଷ୍ଟ, ଚିହ୍ନହୀନ ଅନୁଭୂତି,—ଅତି ଦୁର୍ବହ
ଆନନ୍ଦର । ସେ ପ୍ରୀତିରେ କେବଳ ଅଶ୍ରୁସ୍ତି । ସେ
ପ୍ରେମରେ ଅପ୍ରମେୟ ଦାୟିତ୍ୱ । ଓଃ—ସେ କି କଷ୍ଟ !

ତଥାପି, ତଥାପି ସେଇ ଦୁଃଖ ମୋର ଚିର ଆକାଂକ୍ଷିତ
—ସେଇ ପ୍ରେମ ମୋର ଚରମବାଞ୍ଛିତ ।

ସେ ପ୍ରେମ କିପରି—ସେ ପ୍ରେମ କି ପଦାର୍ଥ—କେଉଁଠୁ
ଆସେ—କିମିତି ସଞ୍ଚାର କରେ କିଛି ଜାଣିନାହିଁ ?

ତାର ସଂଜ୍ଞା ନାହିଁ—ସଂଜ୍ଞାହୀନ । ସେ ପଦାର୍ଥ କି ନୁହେଁ
ଜାଣେ ନାହିଁ, କିନ୍ତୁ ଅପଦାର୍ଥରେ ମଧ୍ୟ ସଞ୍ଚରିତ ହୁଏ ।
ସେ ସ୍ୱାର୍ଥ ନୁହେଁ—ପରାର୍ଥ ନୁହେଁ—ପରମାର୍ଥ ।

କହିବ ଗୋଟେ କଥା ? ଶୁଣ ! ବଡ଼ ଗହନ କଥା
ସେ । କାଳେ କଏ ନ ବୁଝିବ ପରଚେ ନ ଯିବ
କହିଲେ, ସେଥିପାଇଁ ମୁଁ ଫିଟେଇ କହେ ନାହିଁ କାହା
ଆଗେ । ତମେ ବୋଧହୁଏ ବୁଝିପାରିବ !
ତେଣୁ କହୁଛି ।

ସେ ଭଲ ପାଇବା ହେମିନ୍ତ ଆସେ—ଆପେ ଆପେ—
ବଳେ ବଳେ ପେଲ ପଶେ । ସେ ପ୍ରେମ ।
ସେ ପ୍ରେମ ଯେ ଅଯାଚିତ !

ଏଥର ବୁଝିପାରିଲ, କାହିଁକି ଶୁଝି ହୁଏ ନାହିଁ
ସେ ଋଣ ? ସେ ଭଲ ପାଇବା ବଦଳରେ ଯେତେ
ଭଲ ପାଇବା ଦେଲେ—ସବୁ ଅଜାଡ଼ି-ଉଜାଡ଼ି,
ଚମ୍ପଡ଼ି ନଗାଡ଼ି ପୋଛିପାଛି ଭିତରଟାକୁ ବିଲ୍‌କୁଲ୍
ଖାଲି କରି ଦେଇଦେଲେ, ଦେଇଁ ଦେଇଁ ଯୁଗ ଯୁଗ,
ଜୀବନ ଜୀବନ, ଜନମ ଜନମ ବିତିଗଲେ ବି
ସେ ପ୍ରେମର ପରିଶୋଧ କରିହେବ ନାହିଁ ।

ଯେ ଆପେ ଆପେ ଅଯାଚିତଭାବେ ଆଗେ ଆସି
ଦେଇଗଲା, ମୁଁ ତା' ବଦଳରେ ଯେତେ ଦେବି
ଯାହା ଦେବି, ସେ ସବୁ ପଛ ହୋଇଯିବ, ଆଗ ହେବ
ଆଉ କପରି ? ଶେଷ ସିନା ହେବ, ମୂଳ ତ
ଆଉ ହୋଇପାରିବ ନାହିଁ ।

ଯେତେ ହେଲେ ବି ସେ ଦେବା କଣ ଆଉ
ଆପେ ଆପେ ଦେବା ହେବ—ନହୁଁତା ଅମଶୋଧ୍ୟ
ନୈବେଦ୍ୟ ହୋଇପାରିବ ? ନଇତି ନଇତି
ସାତଧୂପ ଷୋଳ ଅବକାଶ ଯେନ୍ତ କାଢ଼ିଲେ ବି ସବୁ
ତାରି ଭୋଗ—ତା'ରି ପ୍ରସାଦ—ଆସ୍ୱାଦିତ
ଉଚ୍ଛିଷ୍ଟ—ଦାନ ନୁହେଁ ପ୍ରତିଦାନ ମାତ୍ର ।

ପରିଶୋଧର ସମସ୍ତ ପଥ ତାରି ପ୍ରଥମ ପ୍ରୀତି-ଅର୍ଘ୍ୟହିଁ
ନବୁଜ କରି ଦେଇଛି । ଅଯାଚିତ ପ୍ରେମର ପ୍ରତିଦାନ

ଆଜ ଅପାଶର ହୋଇପାରିବ ନାହିଁ; ତେଣୁ
ମୋର ଏ ଉଦ୍‌ବେଗ ।

ବହୁ ତପ ଧ୍ୟାନ, ଯାଗ ଯଜ୍ଞ, ବହୁ ଦୁଃଖ ନର୍ଯାତନା,
ଆଶା ଓ ନୈରାଶ୍ୟ ମଧ୍ୟରେ ଯୁଗ ଯୁଗର
ଅସାଧ୍ୟ ସାଧନାବଳରେ, ଅଖଣ୍ଡ ଆରାଧନା
ଫଳରେ, ତିଳ ତିଳ ପଳମଳ ପ୍ରୀତି-ଅର୍ଘ୍ୟ ଅର୍ପଣର
ସିଦ୍ଧି ସ୍ୱରୂପ ମୁଁ ତମକୁ ପାଇଛି । ତମେ ମୋର
ଚିରଆକାଂକ୍ଷିତା କାମର କାମିନୀ । ମୁଁ ସ୍ୱୀକାର
କରୁଛି । ସେଥିପାଇଁ ତମେ ଗର୍ବ କରିପାର । କିନ୍ତୁ
ସ୍ୱତଃପ୍ରବୃତ୍ତ ହୋଇ ବରଦାନ ଦେବାରେ
ଦେବତାର ଯେଉଁ ଔଦାର୍ଯ୍ୟ, ସେ ଗୌରବ ତମେ
ଲାଭ କରିପାରିବ ନାହିଁ । ଏ ଜନ୍ମରେ ନୁହେଁ ।

ସେଥିପାଇଁ ତମ ପ୍ରେମରେ ପ୍ରବାହ ଥାଇପାରେ—
ଉଦ୍‌ବାହ ନାହିଁ । ସାରଲ୍ୟ ଥାଇପାରେ—
ଶାବଲ୍ୟ ନାହିଁ ।

ସେଥିପାଇଁ ତମକୁ ପାଇ ମୋର ବର୍ତ୍ତମାନଠାରୁ
ଅଗ୍ରତହିଁ ହୋଇଉଠିଛି ମହତ୍ତର । ସିଦ୍ଧିଠାରୁ
ସାଧନାର ସ୍ମୃତି ହିଁ ସମଧିକ ସୁମଧୁର—ସୁମନୋହର
ତମକୁ ପାଇ ମୁଁ ତମଠାରୁ ତମପାଇଁ ବୁହାଇଥିବା
ଲୁହ, ଲୁହା ଲୁହା କୋହମାରେ ଅଧିକ କୃତଜ୍ଞ;
କାରଣ ସେ ନ ଥିଲେ ତମେ ନ ଥାନ୍ତ—ତାହାର
କୃପାବିନା ତମକୁ ପାଇପାରି ନ ଥାନ୍ତି ।

ଆଜ ତାକୁ ପାଇଛି, ବିନା ସାଧନାରେ—ତାର ପ୍ରୀତି
ଲାଭ କରିପାରିଛି ଉପଯାଚନାରେ—ସେଇଥିପାଇଁ କ
କଣ—ସେ ମୋର ସମସ୍ତ ମନପ୍ରାଣକୁ ଆବୋରି
ଧରି, ମୋର ସମସ୍ତ ଚିନ୍ତାର କେନ୍ଦ୍ରବିନ୍ଦୁ
ହୋଇପଡ଼ିଛି ଆଜ ।

ସେ ଯେ ମୋର 'ଅସାଧନେ ଚିନ୍ତାମଣି'
'ବିଧି ମିଳାଇଛି ଆଣି' ।

ତମକୁ ନ ପାଇ ମୁଁ ଲୁହ ବୁହାଏଁ ସତ;
କିନ୍ତୁ ତାକୁ ପାଇଛି ବୋଲି ମୋର
ଲୁହବୁହା ଆଜି ସରୁ ନାହିଁ ।
କାରଣ ସେ କ୍ଷଣିକ ଥରେ ଅସାବଧାନରେ ହଜିଇ-
ଦେଲେ ଆଉ ଫେରିପାଇବି କି ନାହିଁ କିଏ
ଜାଣେ ! ଫେରିପାଇଲେ ସେ କଣ ଆଉ ସେଇ
'ଅସାଧନେ ଚିନ୍ତାମଣି' ହୋଇ ରହିବ ?

ସେଥିପାଇଁ ତାକୁ ପାଇ ତାକୁ ସାଇତି ରଖିବାର
ସାଧନା ଯେ ମୋର ଆଜି ସରୁନାହିଁ—
ସରିବ ନାହିଁ କେବେହେଲେ ।

ତମେ ମୋର ସାଧନାର ସିଦ୍ଧି ସତ; କିନ୍ତୁ ସେ ମୋର
ପରମ ପ୍ରୟୋଜନ ସ୍ୱୟଂ-ସିଦ୍ଧା ସାଧ୍ୱୀ ।

ତମକୁ ପ୍ରୀତ କରି ମୁଁ ପ୍ରୀତି ପାଏଁ—ତାକୁ ପ୍ରୀତି
ଦେଇ ମୁଁ ପ୍ରୀତ ହୁଏଁ ।

ତମର ପ୍ରୀତିଲାଭ କରିବା ଥିଲା ମୋର ତପସ୍ୟା—
ତାର ପ୍ରୀତିଲାଭ କରି, ସେ ପ୍ରୀତିକି ଅକ୍ଷୟ, ଅବ୍ୟୟ,
ଅଖଣ୍ଡ କରି ସ୍ମୃତିରେ ବାନ୍ଧିରଖିବାର ଅନନ୍ତ ବ୍ରତହିଁ
ମୋର ଆଜି ଜୀବନ ଜୀବନର ଅଭୀପ୍ସା ।
ତମେ ଦୁଃଖ କରୁଛ ? ଈର୍ଷା ହେଉଛି ? ଛି ! ତମକୁ
ଛାଡ଼ି କଣ ମୁଁ ତାକୁ ବାନ୍ଧି ରଖିପାରିବି ? କାରଣ
ତମେଇ ଯେ ଏଇ ପ୍ରୟୋଜନ ଓ ଅଭୀପ୍ସା ମଧ୍ୟରେ
ସଂବନ୍ଧର ବନ୍ଧନ ।

ନା-ନା-ମୁଁ ସେ କଥା କହୁନାହିଁ ତ ! ମୋ ଗୁଡି
ଫାଟିଯିବ—ତମେ ଯଦି ରୋଷକରୁ ମୋତେ
ଆଉ ଭଲ ନ ପାଅ ।

କହୁ ଜାଣିଛ ? ତାକୁ ଭଲ ନ ପାଇଲେ ମୁଁ
ଜଳପୋଡ଼ି ମରିଯିବି ଶତାନଳରେ ନ ହେଉ,
ବଡ଼ାନଳରେ ।

ମୁଁ କାହାକୁ ବଡ଼ କାହାକୁ ଶ୍ରେଷ୍ଠ କରି କହୁନାହିଁ ।
ମୁଁ ଏତକ କହୁଛି—କାହାରି ବିନା—ତମ
ଦୁହିଙ୍କ ଭିତରୁ କାହାକୁ ଛାଡ଼ି ମୋର ଆଉ କଣ
ହୋଇ ରହିବା ଅସମ୍ଭବ ।

ଜୀବନର ପ୍ରତି ପଦରେ, ପ୍ରତି ପ୍ରବର୍ତ୍ତନ ଓ
ପରିବର୍ତ୍ତନରେ ସତେ ଯେପରି ତମ ଦୁହିଁଙ୍କ ଭିତରୁ
ଜଣେ ଭଣିତା ଓ ଆଉ ଜଣେ ପୁରଶ୍ଚରଣ ।

ଜୀବନର ପ୍ରତି ଛନ୍ଦରେ ଜଣେ ମୁଦ୍ରା ଆଉ ଜଣେ
ନୃତ୍ୟ । ଜଣେ ତାଳ, ଆଉ ଜଣେ ଓହାଇ ।

ବର୍ଷ ପରେ ବର୍ଷ କେତେ ଗ୍ରୀଷ୍ମ ଏ ଦେହଟାକୁ
ଦହଗଞ୍ଜ କରି ଯାଉନାହିଁ ! ଶଣ୍ଢ ପାଟୂଆଙ୍କ
ଘୁଂଗୁରତାଳ ଧରି ତତ୍ତ୍ୱେସ୍ୱା ତତ୍ତ୍ୱେସ୍ୱାଣୀଙ୍କ ତଡ଼ାଂକ
ଉତାର ଯେଉଁ ଚମକ ନଚେଇ ଦେଇଯାଏ ତମ
ଉପରେ, ସେଇ ଧାଁ-ଧଉଡ଼ି ଭିତରେ ମୁଁ ତମକୁ
ଦେଖିଛି । କେତେଥର । ଭିତରୁ ଆସି ବାହାରକୁ
ପଳାଉଥାଅ ।

ଆଉ ସେ ? ସେ ବାହାରୁ ଆସି ଭିତରେ ପଶେ ।
ଶବଦ ନାହିଁ—ନଶବଦରେ ନଶାଗରଜନରେ ସେ
ଆସେ । ଆଖିର ଆଲୁଅ ସାଙ୍ଗରେ ସେ ଦଉଡ଼େ
ନାହିଁ । କଳା ମଚ୍‌ମଚ୍ ଜୌଳା ଭିତରେ ଯେଉଁ

ଅମୁହାଁ ଶୋଷ, ସେ ଆସେ ତା'ର ସାଙ୍ଗରେ । ଶୋଷ ନୁହେଁ, ସେ ଖାଲି ଏକ ଛଳନା ।

ହୁଏତ ସେ ଗୋଟାଏ ମରୀଚିକା । ମାରେ ନାହିଁ ଖାଲି, ଘାରେ ।

ହଁ ବରଷା ବି ବର୍ଷୁଛି । ଝୁମ୍‌ଝୁମ୍ ଝୁପୁଝୁପୁ ବରଷା । ରସାକୁ ସରସା କରି ଦେଇଯାଏ । ତାରି ପରଶ ଗନ୍ଧ ନାସାର ରନ୍ଧ୍ର ଭେଦ କରି ଆଖିକୁ ଅନ୍ଧ କରିଦିଏ । ଆଖିପତାରେ ଯେତେବେଳେ ଅଧା ଅଧା ନିଶା ଲାଗିଆସେ, ସେତେବେଳେ ତମେ ଘୁଇ-ନଦର କୁଳୁକୁଳୁ କଳକଳ ଟାଣିଦେଇଯାଅ ପରା ? ଆଜି ସେ ସେଇ ସପନ-ରାଇଜର ରଜା ଝିଅ, ଯିଏ ଧଳାଗାର କଳାଗାର କାଟି ବସିଥାଏ—ବସିଛି ବି ଆଜଯାକେ ।

ଚିହ୍ନିଲ ତାକୁ ?

ଶରଦର ନିର୍ମଳ ଚନ୍ଦ୍ରମଣ୍ଡଳ ଦେହରେ ତମର ଗଣ୍ଡକୁ ଛୁଇଁ ମୁଁ ଯେତେବେଳେ ଖଣ୍ଡଖଣ୍ଡ ସହସ୍ର ଚୁମ୍ବନରେ ମଣ୍ଡିଣି କରିଦିଏଁ, ସେତେବେଳେ ଯିଏ ସେଇ ଝଜାଲି ଆଲୁଅ ଝରରେ ଶୁଦ୍ଧସ୍ନାନ ସାରି ଗଙ୍ଗଶିଉଳୀର ଗନ୍ଧ ଭିତରେ ହସରି ଛନ୍ଦ ଛନ୍ଦୁଥାଏ ମୁଁ ତାରି କଥା କହୁଛି ।

ନା-ନା—ତା' ନୁହେଁ । ଗଙ୍ଗଶିଉଳିର ଗନ୍ଧ ନୁହେଁ । ତମରି ମୁଖବାସର ମହକ ସେ ତମରି ନାକପୁଡ଼ାରେ ପଶି ହସ ଗରଗର ଦୁଇକଳ ଓ ପାଟିରେ ନେସି ହୋଇପଡ଼ୁଛି ସତେକି କାଶଫୁଲର ଧଳା ବାସ ଉପରେ କୁହୁକୁହୁ ଘୁଡ଼ିଦେଇ ।

କର୍ଣ୍ଣ କହ୍ଲାରରେ ତମରି ମହ୍ଲାର ରାଗ ଧରି ଯିଏ
ମୂର୍ଚ୍ଛନା ଛୁଡ଼ୁଥାଏ, ସେ ଆଜି କିଏ କି ?
ତମେ ଯେତେବେଳେ ଜହ୍ନି ଫୁଲରୁ ରଙ୍ଗ ଛଡ଼େଇ
ସକାଳ ପବନରେ ପଳେଇ ଯାଉଥାଅ,
ସେତେବେଳେ ଆସନ୍ତା ସଞ୍ଜରେ ଦେଖାଦେବ
ବୋଲି କଣ୍ଠ ଦେଇ ଅବଗୁଣ୍ଠନ ଝହାଡ଼ରୁ ତେରଛ
ଠାଣି ତରଳାଇ ଦେଉଥାଏ—ତମର ମନେ ନାହିଁ
ତାକୁ ?

ତମେ ଶିଶିର ନଶିର ଉଦାର କେଦାର ଭିତରୁ
କାହାର ମାଣ ମାଣିକାରେ ମୁହଁ ପୁରେଇ ଫୁଲ ଫୁଲ
ହସିବା ଆଗରୁ, ଲପା କାନ୍ଥରେ ଝୋଟି ଦେଇ
ଦାଣ୍ଡଦୁଆରୁ ଘର ଖଟୁଲିଯାକେ ପଦ୍ମପାଦ ଲେଖି
ଧୂପ ଧୂଆଁରେ ଉଡ଼ି ଉଡ଼ି ପଳାଇ ଗଲାପରେ ବି
ନୈବେଦ୍ୟ ଆରତିରେ ଯାର ନଶବଦ ସ୍ତବ ଶୁଭୁଥାଏ,
ସେ ପରା ସେଇ !

ହେମନ୍ତର ସୀମାନ୍ତରେ ଯିଏ ପ୍ରାଚୀ ଫରୁଆରୁ
ସିନ୍ଦୂରଟୋପି ଆଣି ତମକୁ ସୀମନ୍ତିନୀ ସଜାଏ, ସେ
ଆଜି କେହି ନୁହେଁ—ସେଇ ।

ପଳାସ ବନରେ ହୋରିଖେଳ ଲାଗିଲାଣି ଦେଖି
ତମେ ଯେତେବେଳେ ଅବିର ଉଡ଼ାଇ ରଙ୍ଗ ପିଚକାରୀ
ମାରି ଘର ଭିତରକୁ ପଳାଇ ଯାଉଥାଅ ଲୁଚିବା
ପାଇଁ ଡରେ, ସେତେବେଳେ ଫୁଲର ହାଟ ମଝିରେ
ଯେ କୁହାଟ ଛୁଡ଼ି ମୋତେ ଖୋଜି ବୁଲୁଥାଏ
ଭୁଲ୍ଲଠାରେ, ମୁଁ ତାକୁଇ ଭଲ ପାଏଁ ତମଠୁଁ ବେଶି ।
ହଁ, ସତ କହୁଛି ।

ଗ

କାରଣ କୋଇଲିର କୁହୁରେ ତାର ଗନ୍ଧ, ମଶ୍ୱଣିକାର
ମାମ୍ଲାରେ ତାର ଶବଦ, ମେଘର ନହବତରୁ ତାର
ପରଶ, ଜହ୍ନର ହଳଦୀ-ଗାଧୁଆ ଆଲୁଅ ହାହରେ
ତାର ସ୍ୱାଦ ମୁଁ ପାଏଁ—ଆଜି ଦେଖେଁ ଶୀତ ସଞ୍ଜର
ଜଣବଦ ଜବଡ଼ତାଇ ତାର ସ୍ୱରୂପ ।

ତଥାପି ତାକୁ ଚିହ୍ନିବାରେ ବୋଧହୁଏ ତମର
ଅସୁବିଧା ହେଉଛି ।
ତେବେ ଶୁଣ ! ତମେ ହସ କାହା ଲାଗି ? ମୋ ଲାଗି ।
ନୁହେଁ ? ମୁଁ ହସିଲେ ହସ, ମୋ ପାଇଁ ହସ । ମୁଁ
ହସାଇଲେ ହସ । ଆଉ କାନ୍ଦ ବି ।

ଆଉ ସେ କଣ କରେ ଜାଣିଚ ?

ଉହୁଁ ! ମୁଁ ବି ବୋଧେ ଜାଣେ ନାହିଁ । ହସେ କି ନାହିଁ
ସେ କଥା ମୋର ମନେ ପଡ଼ୁନାହିଁ ତ ! କାନ୍ଦିବାର
ମୁଁ କେବେ ଦେଖିନାହିଁ ତାକୁ । କିନ୍ତୁ ସେ ନ ହସି ବି
ହସାଏ —ନିଜେ ନ କାନ୍ଦି ଅନ୍ୟକୁ କନ୍ଦାଏ—ବହୁ
ଲୋକଙ୍କୁ । କେମିତି ଜାଣିଚ ? ମୋତେଇ ଆଗରେ
ଥୋଇଦେଇ—କମିଆ କଲାପରି ।

ଜାଣିଚ ? ଫୁଲପଡ଼ିକି ଶୁଣିଲେ । ସତ କହୁଚି—
ତମେ ପାଖରେ ନ ଥିଲାବେଳେ ମୁଁ ତମ ନାମଟାକୁ
ଘୋଷି ହେଉଥାଏଁ—ବାର ବାର ସହସ୍ରେ ବାର ।
ତମ ଗୁଣ ଗାଇ, କୀର୍ତ୍ତନ କରି, ତମ କଥା ହଜାରେ
ଲୋକଙ୍କ ଆଗରେ ପକାଇ ମୁଁ ବଡ଼ ସୁଖ ପାଏଁ—
ଭାରି ଭଲ ଲାଗେ ।

କିନ୍ତୁ···କିନ୍ତୁ···ତା' କଥା କାହାରି ଆଗରେ କହି
ପାରେ ନାହିଁ । ସରମରେ ଲାଜରେ ସଢ଼ି ଯାଏଁ ।
ଯେମିତି ତା' ସାଙ୍ଗରେ ଏ ପ୍ରୀତିଟା ଲୁକ୍କ୍ୱେଗ—
ପରକୀୟା !

ସେଦିନ ତମେ ଶୁଣିଥିଲ—ଶୁଣି ବୁଝିପାରି ନ ଥିଲ ପୂରା—ମୁଁ ଶୋଇ ଶୋଇ ଯାହା ନାମ ଧରି ତମକୁ ପଡ଼ିଥିଲି । ମୁଁ ଶୋଇ ନ ଥିଲି—ଘୁମ୍ବୁଁ ବି ନ ଥିଲି ସେତେବେଳେ । ସେଟା ମୋର ଶୋଇବାରେ ଘୁମ୍ବିବା—ସପନରେ ସତ ଅନୁଭବ । ଏଥର ବୁଝି-ପାରୁଛ ଟିକଏ ଟିକଏ—ସେ କମିତକା ହୋଇଥିବ—ତାର ପ୍ରୀତି କେମିତିକା ହୋଇଥିବ—ଆଉ ସେ ପ୍ରୀତିରେ କି ମାଧୁରୀ ଥିବ—ସେ ମାଧୁରୀରେ ମୁଁ କପରି ବିଭୋର ହୋଇଥିବି ?

ମୋ ଆଗରେ କେହି ତମରି ପ୍ରଶଂସା କଲେ, ମୋ ଚିତ୍ତ ନାଚିଉଠେ ଆନନ୍ଦରେ । ମନ ହୁଏ ସେଇ ଆନନ୍ଦର ନିଶାରେ ବାଉଳା ହୋଇ ଧାଇଁ ବୁଲିବାକୁ ଏଣେତେଣେ ଯୁରିଆଡ଼େ ଅନାଧୂନଆକ ।

ଆଜି ତା' କଥା କାହା ମୁହଁରୁ ଥରେ ଶୁଣିଲି ତ ମୋର ସବୁ ସରିଗଲା—ମୁଁ ଆଉ ମୋର ହୋଇ ନ ଥାଏଁ ଯେମିତି—ଏମିତି ଲାଗେ କାହିଁକି ! ମନ ହୁଏ—ପୁଣ ପୁଣ ତା' ଗୁଣ କିଏ ମୋ କାନ ପାଖରେ ଶୁଣାଉଥାନ୍ତା କି ! କିନ୍ତୁ ଏ କଣ ! ମୋର କଣ ଆଉ କାନ ଥାଏ ଶୁଣିବାକୁ ? ଆନନ୍ଦ ଆଜି ଉନ୍ମାଦନା ସାଙ୍ଗରେ ସଙ୍କୋଚ ଆଉ ଲଜ୍ଜାକୁ ଗୋଳେଇଦେଲେ ଯେଉଁ ରଙ୍ଗ ବାହାରେ, ସେ ରଙ୍ଗକୁ ସାରା ଅଙ୍ଗରେ ନେସି-ଦେଲେ, ଦେହଟାଯାକର ଢଙ୍ଗ ଗୋଟାଏ ହୋଇଯାଏ । ଯେମିତି ହାତ ଗୋଡ଼ ନାକ କାନ କିଛି ନାହିଁ । ଖାଲି ଗୋଟାଏ ବର୍ଣ୍ଣ । କିଏ ପଣ୍ଡ କଳା । କି ଏ ପଣ୍ଡ ଧଳା । ନଦେଲେ ହଳଦୀ ଗରଗର ଦେହ । ସତେ କି ଜଗନ୍ନାଥ ବଳଭଦ୍ର ସୁଭଦ୍ରା । କଇଁଚ ପରି ହାତ ଟଗୋଡ଼ ସବୁ ଯେମିତି ଦେହ ଭିତରକୁ ପଶିଗଲାଣି କୁଆଡ଼େ । ଏମିତି ଅନୁଭବ ହୁଏ ।

ମୁଁ ଦେଖିଛୁ—ପ୍ରଥମ ପ୍ରଣୟକାଳରେ ତମର ଉନ୍ନତ
ବକ୍ଷ—ମୋର ନାମାଲେଖ୍ୟରେ ପତ୍ରପୂର୍ଣ୍ଣ । ସେ
ଚନ୍ଦନଚର୍ଚ୍ଚିତ ଶତାବଳ ପତ୍ରାବଳରେ ପରିଣତ
ହେବାର ବାସନାରେ ସ୍ୱଚ୍ଛେର ।

ଆଜ ସେ ? ସେ ବାରମ୍ବାର ତାର ପ୍ରସାଧନ-
ପେଟିକାକୁ ଅପସାରଣ କରି—ପ୍ରିୟ ଆଳଙ୍କ ଗହଳରେ
ଅଳ କରୁଥାଏ—'କ ନାମ ବୋଇଲୁ ତୁମ୍ଭ ଗୋ ?'

ନା—ନା—ସେ ଆଜ୍ଞ ମୁଁ କେବେହେଲେ ତମପରି
ଦୁହଁ ଦୁହେଁ ନିବଡ଼ ଘନ ପ୍ରଣୟରେ···ମାନେ—ମାନେ
କେବେହେଲେ ସେ ମୋତେ ଏମିତି ତାର ଭୁଜବଲ୍ଲୀରେ
ଭିଡ଼ ରଖି···ମାନେ—ମାନେ—ମୁଁ କେବେ ଏପରି
ଲୋଲୁପୀ ହୋଇ ତା ଅଧରରେ ଅଧର ଥାପି
ନୟନରେ ନୟନ ନିବେଶି···ମାନେ—ମାନେ—ଆମେ
ଦୁହେଁ କେବେହେଲେ ଏକ ଦ୍ୱୈତ ତତ୍ତ୍ୱକୁ ଅଦ୍ୱୈତରେ
ପରିଣତ କରିବାକୁ ଚେଷ୍ଟିତ ହୋଇ ନାହୁଁ···ସତ—
ଖୁବ୍ ସତ !

ତଥାପି···ତଥାପି···ମେ ଲାବଣ୍ୟବଲ୍ୟ, ସେ ଅନନୁଭୂତ
ରସ ବୈଦଗ୍ଧ, ସେ ସର୍ବସ୍ୱଗ୍ରାସୀ ମାଧୁର୍ଯ୍ୟର
ଧ୍ୱର୍ଯ୍ୟାସ୍ୱାଦନ—ନା-ନା—ସମ୍ଭବ ହୋଇନାହିଁ—ହେଇ
ପାରି ନାହିଁ—ହେବାର ଆଶା ବିଫଳ ହେଉଛି ।
ତମଠାରେ ।

ହେବା ଅସମ୍ଭବ । ମୁଁ ଜାଣେ, ତମେ ମୋ' ଜୀବନର
ଜୀବନ । ତଥାପି ତା'ଠାରେ ଯାହା ସମ୍ଭବ, ତମଠାରୁ
ନା' ପାଇ ନାହିଁ । କାରଣ ସେ ମୋର—ତମ୍ଭେ ମୋର
ପ୍ରାଣର ପ୍ରଣୟିନୀ, ପରସ୍ପର ପ୍ରଣୟଜନନୀ,
ମୋ ଜୀବନର ଜୀବାତୁ ।

ଜୀବନର ନାନା ବସ୍ତବରେ ତମେ ମୋର ବିଳାସିନୀ
ହୋଇ ବିହାର କରୁଛ । କେବଳ ଜାଗରଣରେ
ନୁହେଁ—ଶୟନରେ, ସ୍ୱପନରେ ମଧ୍ୟ । ସ୍ୱପନର
ଚୈତନ୍ୟରେ ମଧ୍ୟ ମୁଁ ବିଳାସବିହ୍ୱଳ ହୋଇ ତମର
ପ୍ରେମବେଗ କରୁଛି—ବାର ବାର—ବହୁବାର ।

ତଥାପି—ତଥାପି—ଯେପରି ଗୋଟାଏ ଅଭାବର
ଦୁର୍ବହନା, ଅତୃପ୍ତିର ତିକ୍ତତା କେଉଁ ଆଚ୍ଛନ୍ନ ଅବସାଦ
ମଧ୍ୟରୁ ଆବିର୍ଭୂତ ହୋଇ ଆତଙ୍କ ସୃଷ୍ଟି କରେ ।

କିନ୍ତୁ ଜାଣିଛ ? ଏ ଭଳି ପ୍ରୀତି ଅଛି, ଯାର
ରସାସ୍ୱାଦନରେ ତୃପ୍ତି ଅଛି, ମାତ୍ର ସେ ତୃପ୍ତିହିଁ ସତତ
ଅତୃପ୍ତ !
ହିଜଗତମାନସାକର୍ଷୀ ତାର ସମ୍ବୋଧନ,
ଅସମୋର୍ଧରୂପଶ୍ରୀମଣ୍ଡିତ ତାର ପ୍ରତି ଅବୟବ—
ଅଙ୍ଗସନ୍ଧି, ଅଙ୍ଗର ପ୍ରତ୍ୟେକ ମୁଦ୍ରା-ଠାଣି । ବିସ୍ମାପିତ
ଚରାଚର ତାର ଚେଷ୍ଟା, ତାର ବ୍ରୀଡ଼ା,
ତାର କ୍ରୀଡ଼ା ଆଉ ତାର ସାବଲୀଳ ଲୀଳା ।

ତମ ପ୍ରେମର ମୂଲ୍ୟ ନାହିଁ, ଅମୂଲ୍ୟ । କିନ୍ତୁ ତା'
ପ୍ରେମରେ ଲୌଲ୍ୟହିଁ ଏକମାତ୍ର ମୂଲ୍ୟ ।

ମାନିଲ ପରା ! ଜୀବନର ବହୁ ଭାବରେ ତମେ ମୋର
ବିଭାବରୀ ଭାମିନୀ । ସମସ୍ତ ଇନ୍ଦ୍ରିୟ ମଧ୍ୟରେ ମୁଁ
ତମକୁ ଅନୁଭବ କରେ ବହିରଙ୍ଗଭାବରେ ।
କେତେବେଳେ ବା କେଶୀ ଘାଟ, ଯମୁନାତଟରେ
ତମେ ଏକ ତଟସ୍ଥା ନାୟିକା ଯାହା ପ୍ରେମରେ ସୀମା
ଅଛି—ସତତ ପରିଣାମଶୀଳ ।

ଆଉ-ସେ ? ବଂଶୀବଟ ନିକଟରେ ତାର ଭେଟ ।
ତାର ପ୍ରେମ ବାହାରକୁ ନ ବାହାରି ଭିତରେ

ଭିତରେ ଖେଳି ବୁଲୁଥାଏ—ଚରି ବୁଲୁଥାଏ—ସେ
ମୋର ଅନ୍ତ ଅନ୍ତରସ୍ଥା ଅନ୍ତରଙ୍ଗା—ସମବର୍ଦ୍ଧମାନ
ଆନନ୍ଦାନ୍ତରକ୍ତ ହ୍ଲାଦିନୀ ବିସ୍ମି ।

ତାର ବିବର୍ଦ୍ଧନ ସଂବୋଧନରେ ନାହିଁ, କେବଳ
ସଂବେଦନରେ ।

ସତ କହିବ ? ତମେ କିଛି ଭାବିବ ନାହିଁ । ତମର
ପ୍ରେମରେ, ତମର ପ୍ରେମ ଭିତରେ ମୁଁ ଯେତେବେଳେ
ଆବିଷ୍କାର କରେଁ—ତମର ପ୍ରକୃତ ରୂପ ନୁହେଁ—
ମୋର ସ୍ୱରୂପ ନୁହେଁ— ମୋ ଭିତରର ଏକ
ଅହମିକାକୁ । ବୁଝିପାରୁଛ ?......

ତମର ପ୍ରତି ଅଙ୍ଗରେ, ପ୍ରତି ଅବୟବରେ, ବୟସର
ଆପୂତନରେ, ଯୌବନର ଘନତାରେ ମୋ'ର
ଲୋଲୁପୀ ମନର ଏକ ଆଚ୍ଛନ୍ନ ଛନ୍ଦ । ତମର ପ୍ରତି
ଲୀଳାରେ ମୋର ଅସୀମ ଲାଳସା—ଲାସ୍ୟର
ବିଳାସରେ ସ୍ୱାର୍ଥର ଆର୍ତ୍ତନାଦ ।

କିନ୍ତୁ ତା'ର ସଙ୍ଗରେ ନୁହେଁ, ଖାଲି ପ୍ରସଙ୍ଗରେ,
ଚୁମ୍ବନରେ ନୁହେଁ, କେବଳ ଅବଲମ୍ବନରେ ମୋର
ଅଙ୍ଗ ଯେପରି ନବ ଅନଙ୍ଗର ରୂପ ନିଏ । ତାର
ଗୁପ୍ତାଘାତରେ ମୋର ହୁଏ କାୟାକଳ୍ପ । ପ୍ରୀତିରେ
ତାର ପରିଣାମର ପ୍ରଶ୍ନ ନାହିଁ ! ସେ କେବଳ ଏକ
ଅପରିଣତ ପ୍ରଣୟର ବିବର୍ତ୍ତ ମାତ୍ର ।

ସେ ରୂପ ନୁହେଁ । ତା' ରୂପାନନ୍ଦ ଉପ୍ରବିଷ୍ଟର ପ୍ରେମର
ପିପାସା ଅପନୋଦିତ ହୁଏ ନାହିଁ । ସେ ନିଜେ
ଆନନ୍ଦର ଏକ ଘନମୂର୍ତ୍ତି, ଯାହାର ତାରଲ୍ୟ ଅବିଶ୍ରମ
ଅବିଶ୍ରାନ୍ତ ଓ ନିରବଚ୍ଛିନ୍ନ ।

ସେ ଆଲମ୍ବନ, ଉଦ୍ଦୀପନାର ଅପେକ୍ଷା ରଖେ ନାହିଁ—
ନିରାଲମ୍ବ ।
ତାର ସ୍ଥାୟୀ ନାହିଁ—ସଞ୍ଚାରୀ ନାହିଁ—ସେ ଏକ
ନିରପେକ୍ଷଭାବ ।
ନାହିଁ—ନାହିଁ—ସମାନ ବପୁଃ ଶୋଭାଗୁଣ, ସ୍ୱଚ୍ଛ
ଆରଦ୍ର ସ୍ୱଭାବ ଲକ୍ଷଣର ଆବଶ୍ୟକତା ନାହିଁ । ସେଠି ।
ସେଠି ଲଳିତଲବଙ୍ଗଲତାପରିଶୀଳନ କୋମଳ ମଳୟ
ସମୀରକୁ ଖୁଣ୍ଟି ବସିନାହିଁ ପରଭୃତ ।

ରତି ଓ ମତି, ଲୀଡ଼ା ଓ ବ୍ରୀଡ଼ା ତାର ଉଚ୍ଛିଷ୍ଟ
ଅଧରାମୃତ ।
ସେ ଅନପେକ୍ଷ, ବନ୍ଧନିର୍ବେଭୁ, ଅନନ୍ୟସ୍ୱୟଂସିଦ୍ଧ
ସ୍ୱରୂପିଣୀ ।
ସେ ମୋର ପ୍ରିୟା ନୁହେଁ, ମୁଁ ତାର ପ୍ରିୟ ନୁହେଁ—
"ନାହମ ରମଣୀ ନାହମ ରମଣ ।"

ନା-ନା-ସେ ତମେ ନୁହେଁ—ତମେ ସେ ନୁହଁ । ସେ କିନ୍ତୁ
ତମର ଅନ୍ତରର ଏକ ବହିଃପ୍ରକାଶ । ସେ ତମଠାରୁ
ସ୍ୱତନ୍ତ୍ର ନୁହେଁ । ସେ ତମର ପ୍ରେମାନୁଭୂତିର ଆକୃତି ।
ତମର ପ୍ରେମ ସମ୍ଭୋଗର ବିବର୍ତ୍ତ ବିଳାସ—ସ୍ୱୀୟ
ସ୍ୱରୂପର ମହାଭାବ ପ୍ରକାଶ ।

ମନେଥିବ ସେଦିନର କଥା । ସେଦିନ ଜୀବନର ଏକ
ଅଘଟନ ଘଟନ ପଟଳର ପ୍ରତିଫଳନ । ମନେଥିବ ।
ତମେ ମୋତେ ପଚାରିଥିଲ । ମୁଁ କହିଥିଲି ତମକୁ ।
ଅଲୌକିକ ସ୍ୱପ୍ନ-ଦର୍ପଣରେ ଆପଣାର ଅନବଦ୍ୟ
ଅଭିବ୍ୟକ୍ତି ଦିବ୍ୟରୂପ ସେ । ସେ ମୋର ଅତୀତ
ବର୍ତ୍ତମାନର ସଂଯୋଗ ସଂଭୂତ ଏକ
ସମ୍ଭାବ୍ୟ ଭବିଷ୍ୟତ୍ ।

ସେ ତମେ ନୁହଁ—ମୁଁ ନୁହଁ—ତମର ଓ ମୋର ଏକ
ମିଳିତ ତନୁ । ବାହାରେ ତମେ—କବିପ୍ରିୟା—ଭିତରେ
ମୁଁ—ସ୍ୱୟଂ କବି ।
ବାହାରେ ତମର ପରିଚୟ—ତମରି ସମ୍ବୋଧନ;
ଭିତରେ—ଅବଗୁଣ୍ଠନରେ ମୋ'ର ଭାବ, ମୋ'ର
ଚରିତ୍ର—ମୋର ଜୀବନୀ ।

ତମକୁ ଭଲ ପାଇବା ମୂଳରେ ନିଜକୁ ଭଲ ପାଇବାର
ହୀନ କାମନା ଧୀରେ ଧୀରେ ଯେତେବେଳେ ବିହୀନ
ହୋଇ ଆସେ……
ତମରି ନାମ ଗାଇଁ ଗାଇଁ ଘୋଷି ଘୋଷି ଯେତେବେଳେ
ମନ ହୋଇଯାଏ ଭୁହାଭୁହା ଧୂପ ଆଉ ପୌଟି ପୌଟି
ହୋଗ…
ଯେତେବେଳେ ତମେ ନ ଥାଇ ରହିଥାଏ କେବଳ
ତମରି ନାମ…
ଥାଏ କେବଳ ତମ ପ୍ରୀତିର ପ୍ରତିମା, ପ୍ରେମର ମାଧୁରୀ…
ଆଉ ସେ ମାଧୁରୀରେ ମୋର ହିୟାର ଭାବ…
ପ୍ରତି ଇନ୍ଦ୍ରିୟ, ପ୍ରତି ଅଂଗ ସହସ୍ରାନ୍ୱିତ ହୋଇ ମଧ୍ୟ ମୁଁ
ଯେତେବେଳେ ସେ ରସ ଆସ୍ୱାଦନରେ ଅକ୍ଷମ
ହେଲାପରି ମନେହୁଏ…
ଯେତେବେଳେ ସେହି ଅକ୍ଷମତାର ଚେତନା ମୋତେ
ଅସ୍ଥିର କରେ, ଆଗ୍ରହ ବଢ଼ାଇ, ଉଚାଟନ କରି
ପ୍ରାଣକୁ…
ସେତେବେଳେ ସେତେବେଳେ…
କହିପାରିବ କିଏ ସେ—ଯାହା ପାଇଁ ସେ ଉଚାଟନ
—ସେ ଉନ୍ମାଦନ ?
କହନ୍ତି ପଦ୍ମ—ସେ ତମେ ନୁହଁ—ସେ ସେଇ ।

ଉଷା'ର ଉଷତ ଉରସରେ ଶିର ଥୋଇ
ଯେତେବେଳେ ସୁଦୂର କାକଳିର ଆକୁଳ ଆହ୍ୱାନ

'ଉତ୍ତିଷ୍ଠତ—ଜାଗ୍ରତ—ପ୍ରାପ୍ୟବରାନ୍ ନିବୋଧତ'ର
ନିଶା ଲଗାଇଦେଇଯାଏ—
ମଧ୍ୟାହ୍ନର ଧ୍ୟାନମଗ୍ନ ନିମିଳିତ ନୟନ ଉପରେ
"ମଧୁବାତା ଋତାୟତେ" ଧ୍ୱନିତ ହେଉଥିଲ ତାର
ମୃଦୁଳତାକୁ ମୁଁ ଯେତେବେଳେ ଆଘ୍ରାଣ ଆସ୍ୱାଦନ
କରି ନୂତନ ଚୈତନ୍ୟ ଲଭ କରେ···
ସଂକ୍ଷୀୟମାଣ ସାୟାହ୍ନର ସଂକୀର୍ଣ୍ଣତାକୁ ଉଦାରିତ କରି
ଯେତେବେଳେ 'ପୂର୍ଣମଦ—ପୂର୍ଣମିଦଂ'ର ଉଦାର
ଉଦାତ୍ତ ଭାବ ସମସ୍ତ ଶରୀରକୁ ସ୍ପୃଷ୍ଟ ପରିଭୃଷ୍ଟ
କରି ନେଉଥାଏ ମୋର···
ସେତେବେଳେ···ସେତେବେଳେ···
ସେତେବେଳେ ସେଇ ସ୍ପର୍ଶ, ସେଇ ସ୍ୱାଦ, ସେଇ
ସ୍ୱରର ଅନୁଭୂତି ମୋତେ ଯାହା ଦେଇଯାଏ ସେ,
କେବଳ ତା'ର ମାଧୁର୍ଯ୍ୟ—ତାର ରୂପମାଧୁର୍ଯ୍ୟ,
ଗୁଣମାଧୁର୍ଯ୍ୟ ଓ ଚେଷ୍ଟାମାଧୁର୍ଯ୍ୟ ବ୍ୟତିରେକେ ଅନ୍ୟ
କିଛି ନୁହେଁ ।

ସେ ପ୍ରେମରେ ଦାହ ନାହିଁ—ଅତି ଶୀତଳ—ତଥାପି
ମୁଁ ଦଗ୍ଧ ।
ସେ ତମଠାରୁ ବେଶି ଦୂରରେ ନ ଥାଏ । ଖୁବ୍
ନିକଟରେ । ତମର ପ୍ରଣୟ ପ୍ରସ୍ରବଣରୁ କ୍ଷରିତ ରସ
ଓ ରତି ବାଷ୍ପାୟିତ ହୋଇ ଧୀରେ ଧୀରେ ଯେପରି
ପରିଣତ ହୋଇଯାଏ ବର୍ଷଣପର ତା'ର ପ୍ରେମ ଓ
ପ୍ରୀତିର ବାରି ରାଶିରେ ।

ତମେ ଓ ସେ ଅନେକ ସମୟରେ ଅଭିନ୍ନ । କିନ୍ତୁ
କେତେବେଳେ ?
ତମ ସହିତ ମୋର ମିଳନରେ ଯେଉଁଠି ମାଦନ
ବିଦ୍ୟମାନ···
ତମର ବିଚ୍ଛେଦରେ, ବିରହରେ ମୁଁ ଯେଉଁଠି

ମୋହନରେ ମୁହ୍ୟମାନ···
ଯେତେବେଳେ ସ୍ୱପ୍ନଲବ୍ଧ ଭାବୋଚ୍ଛ୍ୱାସ ଓ ଦ୍ରବ୍ୟ
ଉନ୍ମାଦରେ ମୁଁ ଉନ୍ମତ୍ତ···
ସେଠି ତମେ ସେ—ଓ ସେ ତମେ ।

ତଥାପି ତମେ ସେ ନୁହଁ—ସେ ତମେ ନୁହଁ ।
କାରଣ, ତାର ଓ ମୋର ମିଳନ ପାଇଁ ତମେଇ
ମୋର ଶ୍ରେଷ୍ଠା ମଞ୍ଜୁଷା, ମୋର ପରମଗୋପ୍ୟା
ଗୋପମାସ୍ଥା, ଗୋପିକା, ଅନ୍ତରଙ୍ଗା ଦୂତୀ ଯାହାର
କର ଧରି ମୁଁ କହେ—"କରମୁହିଁ କନ୍ୟା ସେହୁ
ହୋଇଛୁଁ ବଧିରେ ।"

ତମ ସହିତ ମୋର ମିଳନଠାରୁ, ତା' ସହିତ ମୋର
ମିଳନରେ ତମର ସୁଖାଧିକ୍ୟ । ନୁହେଁ ? ସତ କହିଲ

ତାର ସୁଖରେ ତମର ସୁଖ ସନ୍ନିହିତ, ତାର ପ୍ରଣୟ
ଗୌରବରେ ତମେ ଗରବିଣୀ ଗୋପାଙ୍ଗନା ।
ଠିକ୍ କହିନାହିଁ ?

ଏଥର ଚିହ୍ନିଲ ତାକୁ ?
ଚିହ୍ନିନାହିଁ ବୋଲି କହୁଥିଲ ଯେ !

ହଁ-ସେଇ । ସେଇଟି ତାର ନାମ । ସମସ୍ତେ ତାକୁ
ସେଇ ନାମରେ ଚିହ୍ନିବେ, ଚିହ୍ନନ୍ତୁ ବ ।
ନା-ନା-ମୁଁ ତାର ସେ ନାମ ଦେଇନାହିଁ । ହୁଏ ତ
ସେ ନାମ ମୋ ଭିତରେ କେଉଁଠି ଲୁଚି ରହିଥିଲା—
କିଏ ଚୋରାଇ ନେଇ ପ୍ରକଟ କରିଦେଇଛି ଦୁନିଆରେ ।
ସେ ଚୋରୁଣୀ ତମେ ନୁହଁ ତ ?
ହୁଏତ ହୋଇଥିବ ! ମୋ ନାମର ସେ ଏକ
ଅପଭ୍ରଂଶ; ଅପଭ୍ରଂଶ ନୁହେ—ଉଦ୍ଭଂଶ
କହିଲ କବିତା ।